# ପୁଲିସ ହାତରେ
# ଲାଠି ଓ ବନ୍ଧୁକ
# କାହା ସ୍ୱାର୍ଥରେ

ବିଶ୍ୱପ୍ରିୟ କାନୁନ୍‌ଗୋ

ନଭେମ୍ବର - ୨୦୦୫

# ପୁଲିସ ହାତରେ ଲାଠି ଓ ବନ୍ଧୁକ କାହା ସ୍ୱାର୍ଥରେ

ସଂକଳକ :
ବିଶ୍ୱପ୍ରିୟ କାନୁନ୍‌ଗୋ

ଡ଼ି.ଟି.ପି. :
ଚନ୍ଦନ କମ୍ପ୍ୟୁଟର
କୋର୍ଟ ଏରିଆ, ଭୁବନେଶ୍ୱର-୧୪ ।

ପ୍ରିଣ୍ଟିଂ :
ପପୁଲାର ପ୍ରିଣ୍ଟ୍
ଲୁଇସ୍ ରୋଡ୍, ଭୁବନେଶ୍ୱର-୨ ।

ପ୍ରକାଶକ :
ବିଶ୍ୱପ୍ରିୟ କାନୁନ୍‌ଗୋ
୨୧୨୨, ସବର ସାହି ଲେନ
ଭୁବନେଶ୍ୱର - ୭୫୧୦୦୬ ।

ସହଯୋଗ ମୂଲ୍ୟ : ୬ ଟଙ୍କା

# ପୁସ୍ତିକା ସଂପର୍କରେ

ଦେଶରେ ସୁଧାରବାଦୀ ଅର୍ଥନୀତି ପ୍ରଚଳନ ପରେ ବୈଷମ୍ୟ ବୃଦ୍ଧି ସହିତ ଦେଶୀ-ବିଦେଶୀ କଂପାନୀ, ବଡ଼/ଛୋଟ ବ୍ୟବସାୟୀ,ସହରାଞ୍ଚଳ ମଧ୍ୟବିତ୍ତ, ନବ୍ୟ ଧନୀକଶ୍ରେଣୀ ଆଦି ଗୋଷ୍ଠୀର ଲୋକମାନଙ୍କର 'ସୁରକ୍ଷା' ପ୍ରଶ୍ନ ନେଇ ଚିନ୍ତା ବୃଦ୍ଧି ପାଇବାରେ ଲାଗିଛି । ସରକାରଙ୍କର ପୁଲିସ ଉପରେ ନିର୍ଭରଶୀଳତା ବଢ଼ି ଚାଲିଛି । ଏଥିସହ ପୁଲିସର ଅକ୍ରୋଶମୂଳକ ମୋକଦ୍ଦମା, ଲାଠି ଚାଳନା, ଗୁଳି ଚାଳନା, ଗିରଫ ଓ ହାଜତ ନିର୍ଯ୍ୟାତନା ମଧ୍ୟ ବଢ଼ିଚାଲିଛି । ପୁଲିସର କାର୍ଯ୍ୟକଳାପ ସଂବନ୍ଧରେ ବିଭିନ୍ନ ଆନ୍ଦୋଳନର ସଂଗଠକମାନଙ୍କ ଭିତରେ ପ୍ରାୟତଃ ଭ୍ରାନ୍ତି ନାହିଁ । ସରଳ, ନିରୀହ ଜନତା ଯେଉଁମାନେ ବି ସରକାରୀ ଫନ୍ଦି ବୁଝିବାରେ ସଂପୂର୍ଣ୍ଣ ସମର୍ଥ ନୁହଁନ୍ତି, କିନ୍ତୁ ଥରେ ଅଧେ ପୁଲିସ ସଂସ୍ପର୍ଶରେ ଆସିଛନ୍ତି, ସେମାନଙ୍କର ପୁଲିସ ବ୍ୟବସ୍ଥା ସମ୍ପର୍କରେ ବୁଝିବାରେ ଅସୁବିଧା ହୋଇନାହିଁ ।

ପୂର୍ବରୁ କୁହାଯାଉଥିଲା "ଚାକିରୀ କରିବ ପୁଲିସ, ମାଛ ଖାଇବ ଇଲିଶି" । "ପୁଲିସ ଏକ ସଂଗଠିତ ଗୁଣ୍ଡାବାହିନୀ" ବୋଲି ବିଚାରପତି ମୁଲ୍ଲା ମତଦେଇଥିଲେ । ଜଣେ ଦାର୍ଶନିକଙ୍କ ମତରେ ଏଭଳି କୌଣସି ଭଲ ଘଟଣା ନାହିଁ ଯାହାକୁ ପୁଲିସ ଗୋଳମାଳିଆ କରିଦେଇ ପାରିବ ନାହିଁ ! କବିବର ରାଧାନାଥ ରାୟଙ୍କ ଉକ୍ତି "ବିନା ମେଘେ ସୃଜି ପାରଇ କୁଳୀଶ" ପୁଲିସ କ୍ଷେତ୍ରରେ ମଧ୍ୟ ପ୍ରଯୁଜ୍ୟ । ଜଣେ ପୁଲିସ ଅଫିସରଙ୍କ ମତରେ ପୁଲିସ ଠାରୁ ଲୋକ ବହୁତ ଆଶା କରନ୍ତି, କିନ୍ତୁ ସେ ସବୁ ଆଶା ପୂରଣ କରିପାରେ ନାହିଁ । ଏଣୁ ତା ବିରୁଦ୍ଧରେ ଅଧିକ ଅସନ୍ତୋଷ । ସ୍ଥିତାବସ୍ଥା ଭିତରେ ସମାଧାନ ଖୋଜୁଥିବା ବ୍ୟକ୍ତି ପୁଲିସ ଆଇନକୁ କିଛି ସୁଧାରି ଦେଲେ ପୁଲିସ ବ୍ୟବସ୍ଥା ଭଲ ହୋଇଯିବ ବୋଲି ମତ ଦିଅନ୍ତି ।

କିନ୍ତୁ ପ୍ରକୃତରେ ପୁଲିସ କାହାର ସ୍ୱାର୍ଥ ଜଗେ ? ଏହି ପ୍ରଶ୍ନଟି ଅଧିକ ମହତ୍ତ୍ୱ ରଖେ ।

ଏ ସଂବନ୍ଧରେ ଯେତେ ଅଧିକ ଆଲୋଚନା ହେବ, ତାହା ପୁଲିସର ସ୍ୱରୂପ ଏବଂ ଏହି ପୁଲିସ ବ୍ୟବସ୍ଥାଟା ପ୍ରକୃତରେ କାହାର ସ୍ୱାର୍ଥ ସାଧନ କରୁଛି ତାହା ଅଧିକ ସ୍ପଷ୍ଟ ହେବ । ଏ ଦିଗରେ ରାଜ୍ୟରେ ଏହା ପ୍ରଥମ ଉଦ୍ୟମ ବୋଲି ଆଦୌ ଦାବି କରାଯାଉନାହିଁ । ଏଥି ପୂର୍ବରୁ ବହୁତ ଉଦ୍ୟମ ହୋଇଛି/ହେଉଛି । ସେହି ଉଦ୍ୟମ ସବୁରେ ଏ ଆଲୋଚନା ଏକ ଛୋଟ ଅଂଶ ହୋଇପାରିଲେ ଏହି ପ୍ରକାଶନର ଉଦ୍ଦେଶ୍ୟ ସଫଳ ହେବ ।

**ପ୍ରକାଶକ**

# ପୁଲିସ ବ୍ୟବସ୍ଥାର କ୍ରମ ବିକାଶ

ଓଡ଼ିଶାର ପୁଲିସ ବ୍ୟବସ୍ଥା ସାଧାରଣ ଭାବେ ଦେଶ ଶାସନ ଏବଂ ନିର୍ଦ୍ଦିଷ୍ଟ ଭାବେ ରାଜ୍ୟର ଶାସନ ବ୍ୟବସ୍ଥା ଠାରୁ ଭିନ୍ନ ହୋଇ ନପାରେ । ପୁଲିସ ବ୍ୟବସ୍ଥାକୁ ମୂଳ ବ୍ୟବସ୍ଥା ଠାରୁ ପୃଥକ୍ କରି ଦେଖିଲେ ତାହା ପ୍ରକୃତ ଅବସ୍ଥାର ସରଳୀକରଣ କରି ଦେଖିଲା ଭଳି ହେବ । ସାମ୍ବିଧାନିକ ବ୍ୟବସ୍ଥାକୁ ସୂକ୍ଷ୍ମଭାବେ ବିଶ୍ଳେଷଣ କଲେ ସ୍ପଷ୍ଟ ହୁଏ ଯେ, ଦେଶର ଶାସନ ପାଇଁ ଆଇନ ପ୍ରଣୟନ ସଂସ୍ଥା (Legislative), କାର୍ଯ୍ୟପାଳିକା (Executive) ଏବଂ ବିଚାର ବିଭାଗ (Judiciary)କୁ ସୃଷ୍ଟି କରାଯାଇଛି । ଏହି ବିଭିନ୍ନ ଅଂଗ ଗୁଡିକ ଭିନ୍ନ ଭିନ୍ନ ବୋଲି ଆଇନ ପୁସ୍ତିକାରେ କୁହାଯାଇଛି । କିନ୍ତୁ ପୁଲିସ ପ୍ରଶାସନ, କାର୍ଯ୍ୟପାଳିକା ବା ସରକାରଙ୍କର ଏକ ଅଂଶବିଶେଷ । ଏଭଳି ସ୍ଥଳେ ସରକାରଙ୍କର ନୀତି ବାହାରେ ପୁଲିସ ପ୍ରଶାସନ ଏକ ଭିନ୍ନ ଭୂମିକା ତୁଲାଇବା ଆଇନ ଦୃଷ୍ଟିରୁ ସମ୍ଭବ ହୋଇନପାରେ । ଏହି ପୃଷ୍ଠ ଭୂମିରେ ପୁଲିସ ବିଷୟକୁ ବିଚାର କରିବା ପ୍ରାସଙ୍ଗିକ ।

ମୌର୍ଯ୍ୟ, ଗୁପ୍ତ ଏବଂ ମୋଗଲ ସମୟରେ ଗ୍ରାମାଞ୍ଚଳରେ ଆଇନ ଶୃଙ୍ଖଳା ରକ୍ଷା ଦାୟିତ୍ୱ ସ୍ଥାନୀୟ ବଡ଼ ବଡ଼ ଜମି ମାଲିକ ବା ଗାଁ ମୁଖିଆଙ୍କ ହାତରେ ନ୍ୟସ୍ତ ଥିଲା । ୧୭୯୨ ମସିହାରେ ବ୍ରିଟିଶ୍ ଶାସନ ସମୟରେ କର୍ଣ୍ଣ ୱାଲିସ୍ ଆଇନ ଶୃଙ୍ଖଳା ପ୍ରଶାସନକୁ ନିୟନ୍ତ୍ରଣ କରିବା ଉଦ୍ଦେଶ୍ୟରେ ଏକ ସ୍ୱତନ୍ତ୍ର ପୁଲିସ ପ୍ରଶାସନ ପ୍ରତିଷ୍ଠା କରିଥିଲେ । ଏହି ପୁଲିସ ପ୍ରଶାସନ ଇଷ୍ଟଇଣ୍ଡିଆ କଂପାନୀ ନିକଟରେ ଉତ୍ତରଦାୟୀ ରହିଥିଲା । ଏହି ବ୍ୟବସ୍ଥା ଅନୁସାରେ ଦାରୋଗା ପଦବୀ ସୃଷ୍ଟି କରାଯାଇଥିଲା । ଦାରୋଗା ଜିଲ୍ଲା ବିଚାରପତିଙ୍କ ପାଖରେ ଉତ୍ତରଦାୟୀ ଥିଲା *[1] । ଏହି ଦାରୋଗାମାନେ ଜମିଦାର ଓ ଗାଁ ମୁଖିଆମାନଙ୍କ କାର୍ଯ୍ୟକୁ ତଦାରଖ କରୁଥିଲେ । ନିଜ ନିଜ ଅଚଂଳରେ ଗୋଟିଏ ଗୋଟିଏ ଛୋଟ 'ରାଜା' ଭଳି ଦାରୋଗାମାନେ ଶାସନ କରୁଥିଲେ ବୋଲି ଜନ୍ ବିମ୍‌ସ ଲେଖିଥିଲେ *[2] । ଉଲ୍ଲେଖଯୋଗ୍ୟ ଯେ କର୍ଣ୍ଣ ୱାଲିସ୍‌ଙ୍କ ଶାସନରେ ପ୍ରଥମେ ଜମି ଜମା ଚିରସ୍ଥାୟୀ ବନ୍ଦୋବସ୍ତ ବ୍ୟବସ୍ଥା ଆରମ୍ଭ କରାଯାଇଥିଲା ଏବଂ ବ୍ରିଟିଶ ଶାସନର ସହାୟକ

ଗୋଷ୍ଠୀ ଭାବେ ଶହ ଶହ ସଂଖ୍ୟାରେ ଜମିଦାର ଗୋଷ୍ଠୀ ସୃଷ୍ଟି କରାଯାଇଥିଲା *3। ବ୍ରିଟିଶ ଶାସନରେ ପୁଲିସ ବ୍ୟବସ୍ଥାର କ୍ରମ ବିକାଶରୁ ଜଣାପଡ଼େ ଯେ, ସରକାରର ଉଦ୍ଦେଶ୍ୟ ସାଧନ ଏବଂ ବିଶେଷ କରି ଭାରତୀୟ ଜନଗଣଙ୍କ ଉପରେ ସଂପୂର୍ଣ୍ଣ ନିୟନ୍ତ୍ରଣ ଜାରିକରି ବ୍ରିଟିଶ ଶାସନର ଅଭିବୃଦ୍ଧି ଓ ସ୍ଥିରତା ବଜାୟ ରଖିବା ପାଇଁ ପୁଲିସ ପ୍ରଶାସନର ମୁଖ୍ୟ ଉଦ୍ଦେଶ୍ୟ ଥିଲା ।

## ପ୍ରଥମ ପୁଲିସ ଆଇନ୍ କାହିଁକି

୧୮୬୧ ମସିହାରେ କିନ୍ତୁ ଏକ ସଂଗଠିତ ପୁଲିସ ବାହିନୀ ବ୍ରିଟିଶ ଶାସନ ପାଇଁ ଆବଶ୍ୟକ ହେଲା । ୧୮୫୭ ମସିହାର ପ୍ରଥମ ସ୍ୱାଧୀନତା ସଂଗ୍ରାମ ଏହାର ମୁଖ୍ୟ କାରଣ ବୋଲି ମନେହୁଏ । ୧୮୫୭ ପରେ ଦେଶର ବିଭିନ୍ନ ସ୍ଥାନରେ ସ୍ୱାଧୀନତା ଆନ୍ଦୋଳନ ଦେଖା ଦେଇଥିଲା । ଏହି ଆନ୍ଦୋଳନକୁ ମୁକାବିଲା କରିବା ଉଦ୍ଦେଶ୍ୟରେ ୧୮୬୧ରେ ପୁଲିସ ଆଇନ କରାଯାଇଥିଲା । ଏଥି ସହିତ ୧୮୬୦ରେ ଭାରତୀୟ ପିଙ୍ଗଳ କୋଡ୍ ଏବଂ ୧୮୬୧ରେ ଫୌଜଦାରୀ କାର୍ଯ୍ୟବିଧି ଆଇନ ପ୍ରଣୟନ କରାଯାଇଥିଲା *4। ଭାରତୀୟ ପିଙ୍ଗଳ କୋଡ୍ (Indian Penal Code) ଏବେ ବି ପ୍ରଚଳିତ ଏବଂ ଫୌଜଦାରୀ କାର୍ଯ୍ୟବିଧି ଆଇନ (code of criminal procedure) ୧୯୭୩ ମସିହାରେ ସଂଶୋଧନ କରାଯାଇଛି। ଜିଲ୍ଲା ସ୍ତରରେ ପୁଲିସ ପ୍ରଶାସନକୁ ଜିଲ୍ଲା ମାଜିଷ୍ଟ୍ରେଟ ଜରିଆରେ ସରକାରୀ ନିୟନ୍ତ୍ରଣରେ ରଖିବା କାର୍ଯ୍ୟ ବ୍ରିଟିଶ ଶାସନ ସମୟରୁ ଆରମ୍ଭ ହୋଇଥିଲା (ପୁଲିସ ଆଇନ-୧୮୬୧, ଧାରା-୪)। ସାର ଜେ.ଏଫ. ଷ୍ଟିଫେନ୍‌ଙ୍କ ଭାଷାରେ "That the Maintanance of the position of district officer is absolutely essential to the maintainance of British rule in India" ବ୍ରିଟିଶ ଶାସନରେ ପୁଲିସ ବ୍ୟବସ୍ଥାର ପ୍ରାଥମିକ ଲକ୍ଷ୍ୟ ଏହା ଥିଲା।

୧୮୬୧ ମସିହାର ଏହି ପୁଲିସ ଆଇନ ଆମ ଦେଶରେ ଓ ରାଜ୍ୟରେ ଏବେ ବି ବଳବତ୍ତର ରହିଛି। ଅବଶ୍ୟ ଦିଲ୍ଲୀ, ମୁମ୍ବାଇ, କୋଲକତା, କର୍ଣ୍ଣାଟକ ଆଦି କେତେକ ଅଚଂଳ ପାଇଁ ନୂଆ ପୁଲିସ ଆଇନ କରାଯାଇଛି। ପୁରୁଣା

ଆଇନ ବଦଳରେ ଏକ ନୂଆ ଆଇନ ହୋଇଛି  କି ନାହିଁ ତାହା ବଡ଼ କଥା ନୁହେଁ, ସରକାରଙ୍କର ପୁଲିସ ନୀତିରେ କିଛି ପରବର୍ତ୍ତନ ଆସିଛି କି ? ଶାସନ ପାଇଁ, ଶୋଷଣ ପାଇଁ, ପୁଲିସ ଆବଶ୍ୟକ ନା ଜନଗଣଙ୍କୁ ଅନ୍ୟାୟ ଅତ୍ୟାଚାର, ଶୋଷଣରୁ ସୁରକ୍ଷା ଦେବା ପାଇଁ ପୁଲିସ ଆବଶ୍ୟକ ? ସରକାର କାହା ପାଇଁ ପୁଲିସ ରଖୁଛି  ?

# ନାଗରିକର ଧନ, ଜୀବନ ସୁରକ୍ଷା ଓ ପୁଲିସ

ନାଗରିକ "ଜୀବନ" (Life) ଓ ସଂପତ୍ତି (Property), ଏଥି ସହ ସାଧାରଣ ଆଇନ ଶୃଙ୍ଖଳା (General Law and Order) ରକ୍ଷା ସରକାରଙ୍କର ସାମ୍ବିଧାନିକ ଦାୟିତ୍ୱ। ପୁଲିସ ଭଳି ସୁରକ୍ଷା ବାହିନୀ ଜରିଆରେ ରାଜ୍ୟ ସରକାର ଏହି ଦାୟିତ୍ୱ ପାଳିବା ପାଇଁ ଆଇନଗତ ବ୍ୟବସ୍ଥା କରାଯାଇଛି ବୋଲି କୁହାଯାଏ। କିନ୍ତୁ ଦେଶର ରାଜନୈତିକ-ଅର୍ଥନୀତି ବ୍ୟବସ୍ଥାରେ ଏକ ସାଧାରଣ ନାଗରିକର "ଜୀବନ" ର ଅର୍ଥ କ'ଣ ଅଛି ? କଲିକତାସ୍ଥିତ ଭାରତୀୟ ପରିସଂଖ୍ୟାନ ସଂସ୍ଥାର ଅଧକ୍ଷ ପି.କେ ତ୍ରିପାଠୀଙ୍କର ଅନୁଧାନ ରିପୋର୍ଟରୁ ପ୍ରକାଶ ଯେ, ଦେଶର ୪୦ କୋଟୀ ଲୋକ ଦୁଇ ବେଳା ପେଟପୂରା ଖାଇବାକୁ ପାଆନ୍ତି ନାହିଁ । ୫୦ କୋଟି ଲୋକ ଦୈନିକ ୧୦ଟଙ୍କା ଭିତରେ ନିଜର ସବୁ ଆବଶ୍ୟକତାକୁ ମେଣ୍ଟାଇବାକୁ ବାଧ ହୁଅନ୍ତି। ଖାଦ୍ୟ, ବସ୍ତ୍ର, ବାସସ୍ଥାନ, ସ୍ୱାସ୍ଥ୍ୟ ସେବା, ଶିକ୍ଷା, ଗମନାଗମନ ଭଳି ମୌଳିକ ସୁବିଧା, ସୁଯୋଗରୁ ଦେଶର ୭୫ କୋଟି ଲୋକ ବଂଚିତ *5। ଆମ ରାଜ୍ୟରେ ଲୋକଙ୍କର ଦାରିଦ୍ର୍ୟ ମଧ କିଛି କମ୍ ନୁହେଁ । ଓଡ଼ିଶା ସରକାରଙ୍କର ମାନବ ବିକାଶ ରିପୋର୍ଟ-୨୦୦୪ରୁ ପ୍ରକାଶ ଯେ, ଶତକଡ଼ା ୭୫ ଭାଗରୁ ଅଧିକ ଲୋକ ଉତ୍ତର ଓ ଦକ୍ଷିଣ ଓଡ଼ିଶାରେ ଦାରିଦ୍ର୍ୟ ସୀମାରେଖା ତଳେ ଅଛନ୍ତି *6। ଆଦିବାସୀ ବହୁଳ ଅଂଚଳରେ ଅନାହାର, ଅଖାଦ୍ୟ ଖାଇବା, ପିଲା ବିକ୍ରି କରି ଚଳିବା ଭଳି ଉତ୍କଟ ଦାରିଦ୍ର୍ୟରେ ସଢୁଥିବା ଲୋକମାନଙ୍କର "ଜୀବନର ଅଧିକାର" ପାଇଁ ପୁଲିସର ଆବଶ୍ୟକତା ରହିଛି ବୋଲି ଆଇନଗତ ବ୍ୟବସ୍ଥା ରହିବା ଏକ ଆଇନଗତ

ଉପହାସ ଭଳି ହେଉନାହିଁ କି ? ଏଭଳି ସାଧାରଣ ମଣିଷର "ଜୀବନ" ପାଇଁ ପୁଲିସ ନୁହେଁ, ରୋଟି, କପଡ଼ା, ମକାନ୍, ନିଯୁକ୍ତି ଆଦିର ପ୍ରାଥମିକତା ରହିଛି । ଏକ ଖବର କାଗଜ (ସମାଜ ତା ୦୯:୧୦:୨୦୦୪) ରିପୋର୍ଟରୁ ପ୍ରକାଶ ଯେ ଗ୍ରାମାଞ୍ଚଳର ୮୨.୫ ଭାଗ ଜନତାଙ୍କର ହାରାହାରି ମାତ୍ର ୧ ହଜାର ଟଙ୍କାର କମ୍ ମୂଲ୍ୟର ସଂପତ୍ତି ରହିଛି । ଅବଶ୍ୟ ୫୦ ଭାଗ ସାଂସଦଙ୍କର ୫୦ ଲକ୍ଷ ଟଙ୍କା ମୂଲ୍ୟର ସଂପତ୍ତି ଅଛି *[7] । ରିଲାଏନ୍‌ସ ଭଳି ଘରୋଇ ଦେଶୀ କଂପାନୀର ୫୦ ହଜାର କୋଟି ଟଙ୍କା ଅଧିକ ମୂଲ୍ୟର ସଂପତ୍ତି ରହିଛି । ୧୯୯୪-୯୫ ମସିହାରେ ଏହି କଂପାନୀର ୧୦୬୪ କୋଟି ଟଙ୍କା ଲାଭ ହୋଇଥିଲା *[8] ।

ଅପରାଧ ନିୟନ୍ତ୍ରଣରେ ପୁଲିସ୍‌ରେ ଭୂମିକା ଗୁରୁତ୍ୱପୂର୍ଣ୍ଣ ବୋଲି ଦାବି କରାଯାଏ । କିନ୍ତୁ ସରକାରୀ ତଥ୍ୟ ଦୃଷ୍ଟିରୁ ମଧ୍ୟ ଏହା ଭୁଲ ପ୍ରମାଣିତ ହୁଏ । ୨୦୦୪ ମସିହାରେ ଓଡ଼ିଶାରେ ପୂର୍ବ ବର୍ଷ ଅପେକ୍ଷା ଶତକଡ଼ା ୬ଭାଗ ଏବଂ ତ୍ରୈବାର୍ଷିକ ହାରାହାରି ଅପେକ୍ଷା ୬.୭ ଭାଗ ଅପରାଧ ଜନିତ ମାମଲା ବୃଦ୍ଧି ପାଇଛି ବୋଲି ସରକାରଙ୍କ ପକ୍ଷରୁ ପ୍ରକାଶିତ ଶ୍ୱେତପତ୍ରରୁ ପ୍ରକାଶ *[9] । ଉଲ୍ଲେଖଯୋଗ୍ୟ ଯେ, ସୁଧାରବାଦୀ ଅର୍ଥନୀତି ପ୍ରଚଳନ ପରଠାରୁ ବଡ ବଡ଼ ଲୋକଙ୍କ ଅପରାଧ (White collar crime) ହାର ବହୁତ ବଢିଛି । ମୁମ୍ବାଇରେ ସବୁଠାରୁ ଭଲ ପୁଲିସ କମିଶନର ବ୍ୟବସ୍ଥା ଅଛି ବୋଲି ଦାବୀ କରାଯାଉଥିବା ବେଳେ ହର୍ଷଦ ମେହେଟ୍ଟା ଭଳି ଷ୍ଟକ ଦଲାଲମାନେ ହଜାର, ହଜାର କୋଟି ଟଙ୍କାର "ଅଂଶଧନ" (Share) ଜାଲିଆତି କରି ଜାତୀୟକରଣ ବ୍ୟାଙ୍କ ଗୁଡିକୁ ଦେବାଳିଆ ପରିସ୍ଥିତିରେ ପକାଇ ଦେଇଛନ୍ତି । ଓଡିଶାରେ ଜମି ମାଫିଆ, ଟେଣ୍ଡର ମାଫିଆ, ଚିଙ୍ଗୁଡ଼ି ମାଫିଆ, ଖଣି ମାଫିଆ, ଜଙ୍ଗଲ ମାଫିଆଙ୍କର କେଳଙ୍କାରୀ ବୃଦ୍ଧି ପାଇଚାଲିଛି ।

ଚିଲିକାହ୍ରଦରେ ଚିଙ୍ଗୁଡ଼ି ମାଫିଆମାନଙ୍କର କାର୍ଯ୍ୟକଳାପ ସଂପର୍କରେ ଓଡିଶା ହାଇକୋର୍ଟଙ୍କର ମନ୍ତବ୍ୟ "ଏହି ମାଫିଆମାନେ ଏବେ ଚିଲିକାର ପ୍ରକୃତ ପ୍ରଭୁ ଏବଂ ମତ୍ସ୍ୟଜିବୀମାନଙ୍କର ଭାଗ୍ୟବିଧାତା ସାଜି ସେଠାରେ ସର୍ବନାଶ ଆରମ୍ଭ କରିଛନ୍ତି,*[10]" ଏଠାରେ ସଂପୂର୍ଣ୍ଣ ପ୍ରାସଙ୍ଗିକ । ଚିଙ୍ଗୁଡ଼ି ମାଫିଆମାନଙ୍କ କବଳରୁ

ନିଜର ଜୀବନ ଓ ଜୀବିକାକୁ ଉଦ୍ଧାର କରିବା ପାଇଁ ଚିଲିକା ମତ୍ସ୍ୟଜିବୀ ମହାସଂଘ ନେତୃତ୍ୱରେ ହୋଇଥିବା ଆନ୍ଦୋଳନରେ ପୁଲିସ ଗୁଳିରେ ୧୯୯୯ ମସିହାରେ ମେ ମାସରେ ଜଣେ ମହିଳାଙ୍କ ସମେତ ୫ ଜଣ ଦଳିତ ମତ୍ସ୍ୟଜିବୀ ଏବଂ ପରେ ରାସ୍ତା ଦୁର୍ଘଟଣାରେ ଦୁଇଜଣ ଦଳିତ ମତ୍ସ୍ୟଜୀବୀ ପ୍ରାଣ ହରାଇଛନ୍ତି ।

# ପୁଲିସର କ୍ଷମତା କାହା ପାଇଁ

ପୁଲିସ ବ୍ୟବସ୍ଥା ବିଷୟରେ ଆଲୋଚନାରେ ସମ୍ଭବତଃ ବର୍ତ୍ତମାନ ପୁଲିସ ଆଇନର ପରିସର କେବଳ ଆଲୋଚନା କରିବା, ଯଥେଷ୍ଟ ହେବ ନାହିଁ । କାରଣ ପୁଲିସ ଆଇନ ବାହାରେ ଶତାଧିକ କ୍ଷୁଦ୍ର ଫୌଜଦାରୀ ଆଇନ (Minor Criminal Acts.) ଓ କେତେକ ବୃହତ୍ ଫୌଜଦାରୀ ଆଇନ (Major Criminal Acts.) ରହିଛି ଏବଂ ସେ ସବୁଥିରେ ଗିରଫ, ମୋକଦ୍ଦମା କରିବା ଆଦି କ୍ଷମତା ପୁଲିସ ଉପରେ ନ୍ୟସ୍ତ କରାଯାଇଛି । ଭାରତୀୟ ପିଙ୍ଗଲ କୋଡ୍‌ରୁ ଆରମ୍ଭ କରି ପୋଟା, ଟାଡ୍‌ା, ନାସା, ବେଆଇନ କାର୍ଯ୍ୟକଳାପ ନିୟନ୍ତ୍ରଣ ଆଇନ ପର୍ଯ୍ୟନ୍ତ, ଅତ୍ୟାବଶକୀୟ ସେବା ପରିଚାଳନା ଆଇନ, ଅବକାରୀ ଆଇନ, ଧର୍ମଗତ ସ୍ୱାଧୀନତା ଆଇନ ଭଳି ବହୁ ଆଇନରେ ପୁଲିସ କ୍ଷମତା ପ୍ରୟୋଗର ପର୍ଯ୍ୟାପ୍ତ ବ୍ୟବସ୍ଥା ରହିଛି । ସାଧାରଣ ଭାବେ ପୁଲିସ ଧର୍ତ୍ତବ୍ୟ (Cognizable) ଅପରାଧ ବିବେଚିତ ସମସ୍ତ ବିଷୟରେ ପୁଲିସର କ୍ଷମତା ରହିଛି । ପୁଣି ଆମେରିକାସ୍ଥିତ ବିଶ୍ୱ ବାଣିଜ୍ୟ କେନ୍ଦ୍ର ଉପରେ ଆକ୍ରମଣ ପରେ ମାର୍ଚ୍ଚ ୨୦୦୩ରେ କେନ୍ଦ୍ର ଘରୋଇ ମନ୍ତ୍ରୀଙ୍କ ଠାରେ ଦାଖଲ ହୋଇଥିବା ବିଚାରପତି ମାଲିମାଥ କମିଟି ରିପୋର୍ଟ ଫୌଜଦାରୀ ନ୍ୟାୟ ପ୍ରଦାନର ମୂଳତତ୍ତ୍ୱକୁ ବିରୋଧ କରୁଥିବାରୁ ଦେଶର ସବୁ ଆଇନଜୀବୀ ଏହା ବିରୁଦ୍ଧରେ ଆନ୍ଦୋଳନ କରିଥିଲେ *11 । ତଥାପି ଏହି ରିପୋର୍ଟ ଅନୁସାରେ ୨୦୦୫ ମସିହାରେ ଫୌଜଦାରୀ କାର୍ଯ୍ୟବିଧି ଆଇନରେ କେତେକ ମୌଳିକ ସଂଶୋଧନ ଅଣାଯାଇ ଅନୁସନ୍ଧାନ କ୍ଷେତ୍ରରେ ପୋଲିସକୁ ଅଧିକ କ୍ଷମତା ଦିଆଯାଇଛି ।

ଉଲ୍ଲେଖ ଯୋଗ୍ୟ ଯେ ଶ୍ରମିକ ମାନଙ୍କରସ୍ୱାର୍ଥ ରକ୍ଷା ପାଇଁ ଉଦ୍ଦିଷ୍ଟ ବୋଲି କୁହାଯାଉଥିବା ଶ୍ରମ ଆଇନ ଗୁଡିକରେ ଅବଶ୍ୟ ପୁଲିସର ପ୍ରାୟ କ୍ଷମତା ନାହିଁ। ୯୦ ଦଶକରେ ନୂଆ ଅର୍ଥନୀତି ଲାଗୁ ହେବା ପରଠାରୁ ସରକାର ଅଧିକ ଭାବରେ ଜନମଙ୍ଗଳକାରୀ କ୍ଷେତ୍ରରୁ ଦାୟିତ୍ୱମୁକ୍ତ ହେଉଛନ୍ତି। ଦେଶୀ ଓ ବିଦେଶୀ କଂପାନୀ, ରପ୍ତାନୀ-ଆମଦାନୀ, ଘରୋଇକରଣ ଆଦି କ୍ଷେତ୍ରରେ ଏବଂ ବିଶେଷ କରି ବେସରକାରୀ ଦେଶୀ ବିଦେଶୀ ପୁଞ୍ଜି ବୃଦ୍ଧି ପାଇଁ ସବୁ ଆଇନଗୁଡିକୁ ସରକାରଙ୍କ ପକ୍ଷରୁ କୋହଳ କରିଦିଆଯାଉଛି। କିନ୍ତୁ ଅନ୍ୟପକ୍ଷରେ ଫୌଜଦାରୀ ଆଇନର ସଂଖ୍ୟା ବୃଦ୍ଧି କରାଯାଉଛି, ପୁଲିସ ବିଭାଗକୁ ଅଧିକ ମାରଣାସ୍ତ୍ରରେ ସଜ୍ଜିତ କରାଯାଉଛି ଓ ପୁଲିସର କ୍ଷମତା ପରିସରକୁ ଅଧିକ ବ୍ୟାପକ କରାଯାଉଛି। ବୈଷମ୍ୟ ବଢୁଛି, ଶୋଷଣ ବଢୁଛି, ପ୍ରତିବାଦ ବଢୁଛି ଏବଂ ପ୍ରତିବାଦ ଉପରେ ଦମନ ବୃଦ୍ଧି ପାଉଛି। ଏଣୁ ଦମନ ବୃଦ୍ଧି ପାଇଁ ଏକକ ଭାବେ ପୁଲିସ ନୁହେଁ ସରକାରଙ୍କର ଉଦାରୀକରଣ, ଘରୋଇକରଣ ଓ ଜଗତୀକରଣ ନୀତି ମୁଖ୍ୟତଃ ଦାୟୀ।

ଓଡ଼ିଶାରେ ବିଭିନ୍ନ ସ୍ଥାନରେ ଚାଲିଥିବା ରାଜନୈତିକ ଆନ୍ଦୋଳନ, ଜନ ଆନ୍ଦୋଳନ ଉପରେ ପୁଲିସର ଦମନ ଲୀଳା, ବିଭିନ୍ନ ଥାନା ହାଜତରେ ମହିଳା, ଶିଶୁଙ୍କ ସମେତ ଦଳିତ, ଆଦିବାସୀ, ସଂଖ୍ୟାଲଘୁ ଗୋଷ୍ଠୀର ବ୍ୟକ୍ତିଙ୍କୁ ନିର୍ଯ୍ୟାତନା, ସାଧାରଣ ସଭା, ସମିତି, ବୈଠକ, ବିକ୍ଷୋଭ, ଧାରଣା ଆଦିରେ ପୁଲିସର ମାତ୍ରାଧିକ ହସ୍ତକ୍ଷେପର ଉଦାହରଣର ଅଭାବ ନାହିଁ। କିନ୍ତୁ ପୁଲିସ କେଉଁଠାରେ ସାଧାରଣ ବ୍ୟକ୍ତିଟିକୁ ମାନବିକ ସହାୟତା ଦେଇଛି, ତା'ର ଉଦାହରଣର ଅଭାବ ରହିଛି। ଗତ କିଛି ବର୍ଷ ତଳେ ଭୁବନେଶ୍ୱର କନଭେଣ୍ଟ ସ୍କୁଲ ଛକ ପାଖରେ ରାତିରେ ଛୁରାମାଡ଼ରେ ଆହତ କେଦାର ପଲ୍ଲୀର ଜନୈକ ଦଳିତ ବ୍ୟକ୍ତିଙ୍କୁ ବଞ୍ଚାଇବା ପାଇଁ ୬ ନଂମ୍ବର ଡ଼ାକ୍ତରଖାନାରେ ଖାରବେଳ ନଗର ଥାନାର ଜନୈକ ସବ୍-ଇନ୍‌ସପେକ୍ଟରଙ୍କର ରକ୍ତଦାନ କରିବା, ପୁଲିସର ଜନମଙ୍ଗଳକାରୀ କାର୍ଯ୍ୟର ଏକ ଉଦାହରଣ। ପୁଣି ପୁଲିସ ଭାବରେ କର୍ତ୍ତବ୍ୟ ପାଳନର "ଆଇନଗତ ପରିସର" ମଧ୍ୟରେ ଏହା ଆସି ନପାରେ। ଅନ୍ୟ ପକ୍ଷରେ ବରଗଡ଼ର ଭେଡେନ ଥାନା ହାଜତରେ ଜଣେ ବ୍ୟକ୍ତିଙ୍କୁ ମୂତ ପିଆଇବା, ନିଆଳିର ଖଣ୍ଡିଆ ଦଣ୍ଡା ଗାଁର କିଛି

ପିଲା ହୋଲି ଦିନ ପୋଲିସ ଉପରକୁ ରଙ୍ଗ ମାରିଦେବା ଯୋଗୁ ପୋଲିସ ପକ୍ଷରୁ ଗୁଳି କରି ସେହି ପିଲାକୁ ହତ୍ୟାକରିବା ଭଳି କେତେକ ଅମାନୁଷିକ କାର୍ଯ୍ୟ ରାଜ୍ୟ ପୁଲିସର ସାମନ୍ତବାଦୀ ସଂସ୍କୃତିର ଉଦାହରଣ ଦିଏ। ପୁଲିସ ଜନସାଧାରଣଙ୍କ ପ୍ରତି କିଭଳି ଜନମଙ୍ଗଳକାରୀ ଆଭିମୂଖ୍ୟ ରଖିବ ତାହା ଓଡ଼ିଶା ପୁଲିସ ନିୟମ (The Orissa Police Rules)ରେ ନାହିଁ। ଅବଶ୍ୟ "ରୁକ୍ଷ" (Rudeness), 'ନିଷ୍ଠୁର' (Harshness) ଏବଂ 'ଅମାନୁଷିକତା' ଭଳି ବ୍ୟବହାରକୁ ଏଥିରେ ବାରଣ କରାଯାଇଛି। ପୁଲିସ ନିଜ କର୍ତ୍ତବ୍ୟ ପାଳନରେ "ନିରପେକ୍ଷ" ରହିବ ଓ "ଯେତେ କମ୍ ସଂଭବ ଅସୁଖକର" (as Little distateful as possible) ବ୍ୟବହାର କରିବ ବୋଲି ଓଡିଶା ପୁଲିସ ନିୟମରେ କୁହାଯାଇଛି। (ଓଡ଼ିଶା ପୁଲିସ ନିୟମ-୫(କ))। କିନ୍ତୁ ପ୍ରକୃତକ୍ଷେତ୍ରରେ ଏହି ନିୟମ କେତେ ପାଳନ ହୁଏ ଓ ପାଳନ ନ ହେଲେ ପୁଲିସ ପ୍ରତି କେତେ ଶାସ୍ତି ବିଧାନ ହୁଏ, ତା'ର ଉଦାହରଣ ଆବଶ୍ୟକ ନାହିଁ। ବରଂ ଯେଉଁ ପୁଲିସ ଅଫିସରମାନେ କୌଣସି କାରଣରୁ ସସ୍‌ପେଣ୍ଡ ହୋଇଥାଆନ୍ତି, ସେମାନଙ୍କୁ 'ପୁରସ୍କାର' ଆକାରରେ ପ୍ରମୋସନ ଦିଆଯିବା ଭଳି ଘଟଣା ଦେଖାଯାଏ। ୧୯୮୪ ମସିହାରେ ବାଣୀବିହାରର ଜଣେ ଛାତ୍ର ନେତାଙ୍କ ପ୍ରତି ଶହୀଦନଗର ଥାନାର ତତ୍କାଳୀନ ପୁଲିସ ଅଫିସର "ଦୁର୍ବ୍ୟବହାର" କରିଥିଲେ ବୋଲି ପ୍ରବଳ ପ୍ରତିବାଦ ହୋଇଥିଲା। ଏହି ଘଟଣାର ତଦନ୍ତ ପାଇଁ ଭୁବନେଶ୍ୱରର ତତ୍କାଳୀନ ଅତିରିକ୍ତ ଜିଲ୍ଲାପାଳଙ୍କୁ ଦାୟିତ୍ୱ ଦିଆଯାଇଥିଲା ଓ ସଂପୃକ୍ତ ପୁଲିସ ଅଫିସରଙ୍କୁ "ସସ୍‌ପେଣ୍ଡ" କରାଯାଇଥିଲା। ତଦନ୍ତ ଆରମ୍ଭ ହୋଇଥିଲା। କିନ୍ତୁ ସାକ୍ଷୀମାନଙ୍କ ଅନୁପସ୍ଥିତିରେ ଗୋପନରେ ତଦନ୍ତ କାର୍ଯ୍ୟ ସମାପ୍ତ ହୋଇଯାଇଥିଲା। କିଛି ଦିନପରେ ଦେଖାଗଲା ଯେ ସଂପୃକ୍ତ ପୁଲିସ ଅଫିସର ଜଣଙ୍କୁ ଅନ୍ୟ ଗୋଟିଏ ସର୍କଲର ଇନିସ୍‌ପେକ୍ଟର ଦାୟିତ୍ୱ ଦିଆଯାଇ ପୁରୁଣା ଭୁବନେଶ୍ୱର ଠାରେ ଅବସ୍ଥାପିତ କରାଯାଇଛି। ଏବେ ଲୋକ ଦେଖାଣିଆ ଭାବେ ସସ୍‌ପେଣ୍ଡ ବି କରାଯାଉନାହିଁ। କାଶୀପୁର ଗୁଳିକାଣ୍ଡରେ କମିଶନ ପକ୍ଷରୁ ଯେଉଁମାନଙ୍କୁ ଦାୟୀ କରାଯାଇଛି, ସେମାନଙ୍କୁ ସରକାର "ମାଫ" କରିଦେଲେ। ପୁଲିସର "ଯୋଗ୍ୟତା" (Standard) ବିବେଚନା କରିବା କ୍ଷେତ୍ରରେ ସର୍ବସାଧାରଣଙ୍କ ପ୍ରତି ତା'ର ବ୍ୟବହାର ବିଷୟ କିଛି ଗୁରୁତ୍ୱ ରଖେନା। ମୋକଦ୍ଦମାରେ ଅଭିଯୁକ୍ତ 'ଦୋଷୀ' ହେବା, ତଦନ୍ତ ପ୍ରକ୍ରିୟା, "ସାଧାରଣ

ପାରଙ୍ଗମ" (General efficiency), ଅଧସ୍ଥନଙ୍କର ପରିଚାଳନା (Management of subordinate) ଏବଂ ସର୍ବୋପରି ତାକୁ ଯେଉଁ ଦାୟିତ୍ୱ ଦିଆଯାଉଛି ତାକୁ ସେ କିଭଳି "ଜ୍ଞାନ" ପ୍ରୟୋଗରେ "ନିୟନ୍ତ୍ରଣ" କରିପାରୁଛି, ତାହା ବିବେଚନାକୁ ନିଆଯିବ। ("XXX above all by his knowledge & Control of the local charge committed to him"(Rule-3, The orissa police Rules)

# ସରକାର-କଂପାନୀ ଓ ପୁଲିସ ବ୍ୟବସ୍ଥା

ସାଂପ୍ରତିକ ପରିସ୍ଥିତିରେ ସାଧାରଣ ଆଇନ, ଶୃଙ୍ଖଳା ରକ୍ଷା ଅପେକ୍ଷା ଦେଶୀ ବିଦେଶୀ କମ୍ପାନୀର ସୁରକ୍ଷାକୁ ନେଇ ସରକାରଙ୍କର ଅଧିକ ପ୍ରାଥମିକତା ରହିଛି। କାଶୀପୁର ଅଂଚଳର କରୋଲ ଠାରେ ଉତ୍କଳ ଆଲୁମିନା ପ୍ରକଳ୍ପ ପାଇଁ ପୋଲିସ ଫାଣ୍ଡି ପ୍ରତିଷ୍ଠା କରାଯିବା, ସି.ଆର.ପି..ଏଫ. ମୁତୟନ କରାଯିବା *12, ଯାଜପୁରର କଳିଙ୍ଗ ନଗର ଅଂଚଳରେ ଏକ ସ୍ୱତନ୍ତ୍ର ଥାନା ପ୍ରତିଷ୍ଠା, ପୋସ୍‌କୋ ଭଳି ବହୁ ରାଷ୍ଟ୍ରୀୟ କଂପାନୀର ଆବଶ୍ୟକତା ଅନୁସାରେ ଥାନା ପ୍ରତିଷ୍ଠାର ପ୍ରତିଶ୍ରୁତି ସହ ବୁଝାମଣା ପତ୍ର ସ୍ୱାକ୍ଷର କରାଯିବା *13 ଭଳି ଘଟଣାରୁ ନାଗରିକଙ୍କର ସୁରକ୍ଷା ନୁହେଁ, ପୁଞ୍ଜିର ସୁରକ୍ଷା, ସରକାରଙ୍କର ପ୍ରାଥମିକତା ହୋଇଛି ବୋଲି କୁହାଯିବ ।

ଏଥି ସହିତ ଦକ୍ଷିଣ ଓଡିଶାରେ ମାଲକାନାଗିରି ଠାରୁ କନ୍ଧମାଳ ପର୍ଯ୍ୟନ୍ତ ଓ ବିଭିନ୍ନ ଭାଗରେ ଓଡ଼ିଶାର ଆଦିବାସୀମାନଙ୍କର ଜମି ଦଖଲ, ଜଙ୍ଗଲ ଉପରେ ଅଧିକାର ପ୍ରଶ୍ନକୁ ନେଇ ଯେଉଁ ମାଓବାଦୀ, ନକ୍‌ସଲବାଦୀ ରାଜନୈତିକ ଆନ୍ଦୋଳନ ଚାଲିଛି, ତାହା ରାଷ୍ଟ୍ରର କର୍ତ୍ତୃତ୍ୱକୁ ଆହ୍ୱାନ କରୁଥିବାରୁ, ସେ କ୍ଷେତ୍ରରେ କେବଳ ଆଇନ, ଶୃଙ୍ଖଳା ଦୃଷ୍ଟିଭଙ୍ଗୀରୁ ସରକାରଙ୍କର ମଧ୍ୟ ଅଗ୍ରାଧିକାର ରହିଛି । ସେଥିପାଇଁ ବ୍ରହ୍ମପୁର ଠାରେ ଏକ ନୂତନ ଓଡିଶା ସଶସ୍ତ୍ର ପୁଲିସ ବାହିନୀ ପ୍ରତିଷ୍ଠା କରାଯିବା, ପୁଲିସକୁ ଅତ୍ୟାଧୁନିକ ମାରଣାସ୍ତ୍ରରେ ସୁସଜ୍ଜିତ କରାଯିବା ଏବଂ ଏପରିକି ଗୋଟିଏ ନୂଆ ଭାରତୀୟ ରିଜର୍ଭ ବାଟାଲିୟନ ଖୋଲିବା ପାଇଁ ସରକାର ସ୍ଥିର କରିଛନ୍ତି । ଅନୁସୂଚିତ ଅଂଚଳରେ ଆଦିବାସୀମାନଙ୍କର ଜମି-ଜମା, ମହାଜନୀ କାରବାର ସମସ୍ୟା ପ୍ରତି ଧ୍ୟାନ ଦିଆଯିବା ବଦଳରେ ସି..ଆର.ପି.ଏଫ. ଭାରତୀୟ ରିଜର୍ଭ ବାଟାଲିୟନ ଭଳି ସଶସ୍ତ୍ରବଳକୁ ମୁତୟନ କରାଯାଉଛି ।

# ଗଣତାନ୍ତ୍ରିକ ଆନ୍ଦୋଳନ-ସରକାରୀ ଆଭିମୁଖ୍ୟ

୯୦ ଦଶକରୁ ଦେଖାଯାଉଛି ଯେ, ଜମି, ଜଳ, ଜଙ୍ଗଲ, ଜୀବିକା ଭଳି ଗଣତାନ୍ତ୍ରିକ ଦାବି ନେଇ ଆନ୍ଦୋଳନ ହେଲେ ସରକାର ସେହି ସମସ୍ୟାର ମଂଜିକୁ ନ ଖୋଜି, ଏହାକୁ "ଆଇନ୍ ଶୃଙ୍ଖଳା" ରୁପ ଦେଇ ପୁଲିସ, ସି.ଆର.ପି.ଏଫ. ଭଳି ସୁରକ୍ଷା ବାହିନୀକୁ ପ୍ରୟୋଗ କରୁଛି । ସବୁ ପ୍ରସଙ୍ଗକୁ 'ଆଇନ ଶୃଙ୍ଖଳା' ପରିଭାଷାରେ ଦେଖିବାଟା ସରକାରୀ କଳର "ସାର୍ବଜନୀନ ନୀତି" ହୋଇଯାଇଛି । ଏପରିକି ସାଧାରଣ ସଭା, ସମିତି, ବିକ୍ଷୋଭ, ଧାରଣା ଭଳି କାର୍ଯ୍ୟକ୍ରମ ଗୁଡିକୁ ସରକାର ଆଇନ ଶୃଙ୍ଖଳା ଆଭିମୁଖ୍ୟରେ ବିଚାର କରୁଛି । ମାଓବାଦୀ, ନକସଲବାଦୀ ରାଜନୈତିକ ଦଳର ଆନ୍ଦୋଳନ, ଅନ୍ୟ ବିରୋଧୀ ଦଳ ଗୁଡିକର ଏବଂ ଏପରିକି ପୁଲିସ ଅନୁମତି ସହିତ ହେଉଥିବା ସଭା, ସମିତି, ବିକ୍ଷୋଭ ଆଦିକୁ ଆଇନ, ଶୃଙ୍ଖଳା ଭାବେ ଦେଖିବା ସରକାରର ଏକ ନୀତି ହୋଇଛି । ସର୍ବନିମ୍ନ ମଜୁରୀ, ଠିକା ଶ୍ରମିକଙ୍କୁ ସ୍ଥାୟୀ କରିବା, ବୋନ୍ସ ଦାବି କରିବା, ଛଟେଇ ବନ୍ଦ କରିବା, ଘରୋଇ କରଣ ବିରୁଦ୍ଧରେ ବିକ୍ଷୋଭ କରିବା ଭଳି ଶ୍ରମିକ ସଂଗଠନ ଗୁଡିକର ଆନ୍ଦୋଳନକୁ ମଧ ଏହି 'ଆଇନ, ଶୃଙ୍ଖଳା' ଚକ୍ଷୁରେ ଦେଖାଯାଉଛି *[14] । (ଶ୍ୱେତପତ୍ର- ଆରକ୍ଷୀ ପ୍ରଶାସନ- ୨୦୦୪)

ସରକାରଙ୍କର ଭୁଲ ବିକାଶ ନୀତି ଭଳି ଜନ ବିରୋଧୀ କାର୍ଯ୍ୟକ୍ରମ ଯୋଗୁଁ ଯେତିକି ଜନ ଅସନ୍ତୋଷ ବୃଦ୍ଧି ପାଉଛି, ପୁଲିସର ଆଧୁନିକକରଣ ବୃଦ୍ଧି ପାଉଛି ଓ ସେତିକି ଦମନ ବୃଦ୍ଧି ପାଉଛି । ଏଥିସହ ଏବେ ପୁଲିସର ଗୁଇନ୍ଦା ବିଭାଗକୁ ଅଧିକ ସକ୍ରିୟ କରାଯାଇ ଜଣେ ଅତିରିକ୍ତ ଡ଼ି.ଜି. ପାହ୍ୟାର ପୁଲିସ ଅଧିକାରୀଙ୍କୁ ଏହି ପଦବୀରେ ବସାଯାଇଛି । ରାଜନୈତିକ ନେତା, କର୍ମୀ, ନାଗରିକ ଅଧିକାରବାଦୀ ସଂଗଠକ, ଜନଆନ୍ଦୋଳନର ସଂଗଠକ୍ର, ଶ୍ରମିକ ନେତା, କର୍ମଚାରୀ ନେତା, ଶିକ୍ଷକ ନେତା, କୃଷକ ସଂଗଠକମାନଙ୍କ ନେତା ଆଦି ଗଣ ସଂଗଠନ ଉପରେ ବେଆଇନ ଭାବେ ସତର୍କ ନଜର ବ୍ୟବସ୍ଥା (Survillance) ବୃଦ୍ଧି କରାଯାଇଛି । ଅନ୍ୟପକ୍ଷରେ ଚିଙ୍ଗୁଡ଼ି ମାଫିଆ, ଟେଣ୍ଡର ମାଫିଆ, ଜଙ୍ଗଲ ମାଫିଆ, ଖଣି ମାଫିଆ, ମଦ ମାଫିଆ ମାନଙ୍କ ଉପରେ ପୁଲିସର ନିରୀକ୍ଷଣ ବ୍ୟବସ୍ଥା ନାହିଁ ।

# ଶିଳ୍ପାୟନ-ସହରୀକରଣ ଓ ସହରାଞ୍ଚଳ ପୁଲିସ ଆଇନ୍

"ଶିଳ୍ପିକରଣ" ଆଳରେ ପୁଲିସର ଆଧୁନିକରଣ କରାଯାଉଛି ବୋଲି ଓଡିଶା ସହରାଞ୍ଚଳ ପୁଲିସ ଆଇନ ୨୦୦୩ରୁ ସ୍ପଷ୍ଟ ପ୍ରମାଣ ମିଳେ । ବିଧାନସଭାରେ ଏହା ଗୃହୀତ ହୋଇସାରି ରାଜ୍ୟପାଳଙ୍କର ଅନୁମୋଦନ ପାଇ ସାରିଛି । ରାଷ୍ଟ୍ରପତିଙ୍କର ମଂଜୁରୀ ମିଳିବା ପରେ ଆଇନରେ ପରିଣତ ହେବ ।

"ଦ୍ରୁତ ଶିଳ୍ପାୟନ" ଓ "ସହରୀକରଣ" ଭଳି ପରିସ୍ଥିତିରେ "ଜଟିଳ ଆଇନ, ଶୃଙ୍ଖଳା, ପରିସ୍ଥିତି" ସୃଷ୍ଟି ହେଉଥିବାରୁ ଏକ "ସୁସଂଗଠିତ", "ଦକ୍ଷ" ଏବଂ "ଏକୀଭୂତ ଆଦେଶ ପାଳନ" ତଥା "ନିୟନ୍ତିତ ବ୍ୟବସ୍ଥା ସମ୍ବଳିତ" ପୁଲିସ ବ୍ୟବସ୍ଥା ଅଧୀନରେ ସହର ପ୍ରଶାସନକୁ ନ୍ୟସ୍ତ କରାଯିବା ଉଦ୍ଦେଶ୍ୟରେ ଏଭଳି ଏକ ଆଇନ ଆବଶ୍ୟକ ପଡୁଛି ବୋଲି ଓଡିଶାର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ୨୦୦୩ ମସିହାର ମୌସୁମି ଅଧିବେଶନରେ ବିଧାନ ସଭାରେ ଘୋଷଣାକରି ସହରାଞ୍ଚଳ ପୁଲିସ ବିଲକୁ ଉପସ୍ଥାପନ କରିଥିଲେ *[15] । (Statement of objects & Reasons, Naveen Pattanaik, member-in-charge)

୧୮୬୧ର ପୁଲିସ ଆଇନ ଅନୁସାରେ ସରକାରଙ୍କର ନିୟନ୍ତ୍ରଣରେ ପୁଲିସ ବ୍ୟବସ୍ଥା ରହୁଛି । କିନ୍ତୁ ଏହି ନୂଆ ଆଇନ ଅନୁସାରେ କେତେକ କ୍ଷେତ୍ରରେ ସରକାର-କଂପାନୀର ଯୁଗ୍ମ ନିୟନ୍ତ୍ରଣରେ ପୁଲିସକୁ କାମ କରିବାକୁ ପଡିବ।

ପୁଲିସର ଘରୋଇକରଣର ଏହା ଏକ କ୍ଷୁଦ୍ର ପ୍ରକ୍ରିୟା ବୋଲି କହିଲେ ଅତିଉକ୍ତି ହୋଇ ନପାରେ। କୌଣସି ସେବାକୁ ସରକାର ଏକ ଅତ୍ୟାବଶ୍ୟକୀୟ ସେବା ଭାବେ ଘୋଷଣା କରିପାରନ୍ତି। ସେପରି କ୍ଷେତ୍ରରେ ସେହି ସେବା କ୍ଷେତ୍ରର ଅଧିକାରୀଙ୍କର ନିର୍ଦ୍ଦେଶ ଅନୁସାରେ ପୁଲସକୁ କାର୍ଯ୍ୟ କରିବାକୁ ପଡିବ। (ସହରାଞ୍ଚଳ ପୁଲିସ ଆଇନ ଧାରା-୨୧) ରାଜ୍ୟରେ ବିଦ୍ୟୁତ ସେବା କ୍ଷେତ୍ରରେ ଜଡ଼ିତ ଦେଶୀ, ବିଦେଶୀ କଂପାନୀ ଗୁଡିକ ଏହି ଆଇନ ବଳରେ ପୁଲିସ ଉପରେ ନିୟନ୍ତ୍ରଣ ରଖି ପାରିବେ।

ଯେକୌଣସି ବ୍ୟକ୍ତି ବା କଂପାନୀ ସୁରକ୍ଷା ଆଳରେ ଅର୍ଥ ବିନିଯୋଗ କରି ନିଜ ପାଇଁ ଅତିରିକ୍ତ ପୁଲିସ ବଳ ନିୟୋଜନ କରି ପାରିବ (ସହରାଞ୍ଚଳ ପୁଲିସ ବିଲ୍-ଧାରା, ୩୭ ଓ ୩୯)।

## ପୁଲିସ୍ ଓ ସରକାରୀ ପ୍ରଯୋଜିତ ଗୁଣ୍ଡାବାହିନୀ :

୧୮ ବର୍ଷରୁ ୫୦ ବର୍ଷ ପର୍ଯ୍ୟନ୍ତ ସବଳ ବ୍ୟକ୍ତିଙ୍କୁ ସର୍ବାଧିକ ୩ ମାସ ପାଇଁ ସ୍ୱତନ୍ତ୍ର ପୁଲିସ ଅଫିସରଭାବେ ଅବୈତନିକ ନିଯୁକ୍ତି ଦିଆଯାଇପାରେ (ସହରାଞ୍ଚଳ ପୁଲିସ ଆଇନ, ଧାରା-୧୩)। ସବୈତନିକ ଯେ କୌଣସି ବେସରକାରୀ ବ୍ୟକ୍ତିଙ୍କୁ ଅତିରିକ୍ତ ପୁଲିସ ଅଧିକାରୀ ଭାବେ ନିଯୁକ୍ତି ଦିଆଯାଇ ପାରେ। କୌଣସି ବେସରକାରୀ ବ୍ୟକ୍ତି ଚାହିଁଲେ ତାଙ୍କ ସୁରକ୍ଷା ପାଇଁ ଏହି ଅତିରିକ୍ତ ପୁଲିସ ଅଧିକାରୀଙ୍କୁ ନିୟୋଜିତ କରାଯାଇପାରେ। ଏବାବଦ ସମସ୍ତ ଖର୍ଚ୍ଚ ସଂପୃକ୍ତ ବେସରକାରୀ ବ୍ୟକ୍ତିଙ୍କୁ ବହନ କରିବାକୁ ପଡିବ (ଧାରା-୧୪)। ଏଭଳି ବ୍ୟବସ୍ଥାର ବିପଜ୍ଜନକ ପରିଣତି ରହିଛି। ଆଜକୁ ପ୍ରାୟ ୨୫ ବର୍ଷ ପୂର୍ବେ ରାଜ୍ୟରେ କଂଗ୍ରେସ ଶାସନ ଅମଳରେ ଜରୁରୀକାଳୀନ ପରିସ୍ଥିତିରେ ଅନ୍ୟକୁ "ଭୟଭୀତ କରାଇ, ବଳ ପ୍ରୟୋଗ କରି ଓ ଅନଧିକାର ପ୍ରଭାବ ପ୍ରୟୋଗ କରି" ନିଜର ଉଦ୍ଦେଶ୍ୟ ସାଧନରେ ପୁଲିସ କାଇଦା କୌଶଳରେ "ଟିସା" ନାମକ ସରକାରୀ ଗୁଇନ୍ଦା ବିଭାଗର ସମାନ୍ତର ଭାବେ ଏକ ଯୁବ ସଂଗଠନ କରାଯାଇଥିଲା। ପୁଲିସ ମାଲଖାନାରୁ ରିଭଲବର ଓ ଗୁଳି ପ୍ରଭୃତି ଅସ୍ତ୍ର ଶସ୍ତ୍ର ସେମାନଙ୍କୁ ଯୋଗାଇ ଦିଆଯାଉଥିଲା। ପୁଲିସ ଗୋଇନ୍ଦା ବିଭାଗର ଅଡିଟ୍ ବହିର୍ଭୂତ ଅର୍ଥରୁ ସେମାନଙ୍କୁ ଅର୍ଥ ଯୋଗାଇ ଦିଆଯାଉଥିଲା। ଇନିସ୍‌ପେକ୍ଟର ଜେନେରାଲ ପଦବୀର ଜଣେ ବରିଷ୍ଠ ପୁଲିସ ଅଧିକାରୀ ଏହି ବେସରକାରୀ ସଂଗଠନର ପରାମର୍ଶଦାତା ଭାବେ କାର୍ଯ୍ୟ ତୁଲାଉଥିଲେ *16। ଅବଶ୍ୟ ସେତେବେଳେ ଏହା ଗୋପନରେ କରାଯାଉଥିଲା। କିନ୍ତୁ ଆଜିର ଏହି ପୁଲିସ ଆଇନ ବଳରେ ଖୋଲା ଖୋଲି ସେଭଳି ସରକାରୀ ଆତଙ୍କବାଦୀ କାର୍ଯ୍ୟକଳାପ ଚାଲିପାରିବ। ଆନ୍ଧ୍ରପ୍ରଦେଶରେ ଯେଉଁ ଗ୍ରୀନ ଟାଇଗର, ନାର୍ସା କୋବ୍ରା ଆଦି ବିପ୍ଲବ ମାନଙ୍କ ବିରୁଦ୍ଧରେ ବ୍ୟବହାର କରାଯାଉଛି ବୋଲି ଅଭିଯୋଗ ହେଉଛି, ସମ୍ଭବତଃ ଏହିଭଳି ଆଇନଗତ ପରସରରେ ଗୋପନରେ ଏହି ସରକାରୀ ଆତଙ୍କରାଜ ଚାଲିଛି।

ବ୍ରିଟିଶ ଶାସନ ଭଳି ସହରାଞ୍ଚଳରେ ସରକାର ପିଟୁଣି ଟିକସ ଆଦାୟ କରିପାରିବ। ସହରାଞ୍ଚଳରେ କୌଣସି ଅଞ୍ଚଳକୁ ସରକାରଙ୍କ ପକ୍ଷରୁ ଗଣ୍ଡଗୋଳିଆ ଅଂଚଳ (Disturbed area) ଘୋଷଣା କରାଗଲେ, ସେ ଅଂଚଳ ପାଇଁ ଯେଉଁ ଅତିରିକ୍ତ ପୁଲିସ ବାହିନୀ ନିୟୋଜିତ ହେବେ ସେ ବାବଦ ଅର୍ଥ ସେହି ଅଞ୍ଚଳର ସ୍ଥାୟୀବାସୀନ୍ଦା ମାନଙ୍କ ଠାରୁ ଟିକସ ଆକାରରେ ଆଦାୟ କରାଯିବ (ଧାରା-୩୮)। କୌଣସି ଅଞ୍ଚଳର ଶାନ୍ତି, ଶୃଙ୍ଖଳା ରକ୍ଷା ସତେ ଯେପରି ସେହି ଅଂଚଳର ସ୍ଥାୟୀ ବାସୀନ୍ଦାଙ୍କ ଉପରେ ସାମ୍ବିଧାନିକ ଭାବେ ନ୍ୟସ୍ତ କରାଯାଇଛି।

ନିଜ ଘରେ କେତେ ସାଉଣ୍ଡରେ ହାରମୋନିୟମ୍ ଭଳି ବାଦ୍ୟଯନ୍ତ୍ର ବଜାଇବ, ରାସ୍ତାରେ ପିଲା ଗୁଡି ଉଡାଇବା ଠାରୁ ଆରମ୍ଭ କରି ସାଧାରଣ ସଭା, ସମିତି ବୈଠକ ଆଦିର ପରିଚ୍ଛଳନା କିଭଳି ହେବ ସବୁରେ ପୁଲିସ ହସ୍ତକ୍ଷେପର ଆଇନଗତ ପରିସର ରହିଛି (ଧାରା ୨୮, ୨୯ଓ ୩୦)।

ପୁଲିସର ଗିରଫ କରିବାର କ୍ଷମତା ଉପରେ କୌଣସି କଟକଣା ନାହିଁ। ଫୌଜଦାରୀ କାର୍ଯ୍ୟବିଧି ଆଇନ ଅନୁସାରେ କେବଳ ପୁଲିସ ଧର୍ତ୍ତବ୍ୟ ଅପରାଧରେ ଗିରଫର କ୍ଷମତା ରହିଛି । କିନ୍ତୁ ଏହି ନୂଆ ଆଇନ ଅନୁସାରେ କେତେକ ଅଧର୍ତ୍ତବ୍ୟ ଅପରାଧରେ ମଧ୍ୟ ପୁଲିସକୁ ଗିରଫ କରିବାର କ୍ଷମତା ଦିଆଯାଇଛି (ଧାରା-୧୯ (୨) ଏବଂ୮୫) କିନ୍ତୁ ପୁଲିସର ଗିରଫ କ୍ଷମତା ଅଧିକ ଅପବ୍ୟବହୃତ ହୁଏ ଓ ଏହା ଦୁର୍ନୀତିର ଏକ ମୂଖ୍ୟ ଉତ୍ସ ବୋଲି ଜାତୀୟ ପୁଲିସ କମିଶନ ରିପୋର୍ଟରେ ଦର୍ଶାଯାଇଛି।

ସହରାଞ୍ଚଳରେ ପୁଲିସକୁ ଯେଉଁସବୁ କ୍ଷମତା ଦିଆଯାଇଛି, ତାହା ବ୍ୟତୀତ ସହର ମଧ୍ୟରୁ ସର୍ବାଧିକ ୨ ବର୍ଷ ପାଇଁ ଯେକୌଣସି ବ୍ୟକ୍ତି ବା ଗୋଷ୍ଠୀଙ୍କୁ ତଡ଼ିଦେବା ପାଇଁ ପୁଲିସର କ୍ଷମତା ରହିଛି (ଧାରା-୪୫, ୪୬ ଓ ୪୭)। ଆଇନ ପୁସ୍ତିକାରେ ଯେଉଁ କାରଣରୁ ଏହି ବ୍ୟବସ୍ଥା ଥାଉନା କାହିଁକି ଏହି ବ୍ୟବସ୍ଥାର ଦୁରୁପଯୋଗ ହେବାର ଯଥେଷ୍ଟ ଆଶାଙ୍କା ରହିଛି। 'ନାସା' ଭଳି ଆଇନ କେବଳ ଅପରାଧୀ ମାନଙ୍କ କ୍ଷେତ୍ରରେ ପ୍ରୟୋଗ ହେବ ବୋଲି

ପାର୍ଲାମେଣ୍ଟରେ ଘୋଷଣା କରାଯାଇଥିଲେ ମଧ୍ୟ ଓଡ଼ିଶାରେ ଗୋପାଳପୁର ଠାରେ ଟାଟା ବିରୋଧୀ ଆନ୍ଦୋଳନର ନେତା ନାରାୟଣ ରେଡ୍ଡୀ, ରାଇଘରର ଆଦିବାସୀ ନେତା, କନ୍ଧମାଳର ଜମି ଆନ୍ଦୋଳନର ସଂଗଠକ ବିକ୍ରମ ମଲ୍ଲିକଙ୍କ ଭଳି ନେତାମାନଙ୍କୁ ଜାତୀୟ ନିରାପତ୍ତା ଆଇନ ବଳରେ ଅଟକ ରଖାଯାଇଥିଲା । ସେହିଭଳି ଅଭ୍ୟାସଗତ ଅପରାଧୀଙ୍କ ପାଇଁ କୁହାଯାଉଥିବା ଫୌଜଦାରୀ କାର୍ଯ୍ୟବିଧି ଆଇନର ୧୧୦ ଧାରାନୁସାରେ କୁଇ ଭାଷାରେ କବିତା ରଚନା କରି ଆଦିବାସୀମାନଙ୍କୁ ସଂସ୍କୃତିକ ଭାବେ ସଂଗଠିତ କରୁଥିବା ଦାସୁରାମ ମାଲେକାଙ୍କ ବିରୁଦ୍ଧରେ ଏକ ଆକ୍ରୋଶ ମୂଳକ ମାମଲା କରାଯାଇଛି ।

ପୁଲିସର ନିର୍ଦ୍ଦେଶକୁ ପାଳନ କରିବା ପାଇଁ ନାଗରିକକୁ ଆଇନତଃ ବାଧ କରାଯାଇଛି (ଧାରା-୨୩) । କୌଣସି ନାଗରିକର ନିଜର ଗଣତାନ୍ତ୍ରିକ ଅଧିକାର ସାବ୍ୟସ୍ତ କ୍ଷେତ୍ରରେ ଏହି ବ୍ୟବସ୍ଥା ନିଶ୍ଚୟ ଅନ୍ତରାୟ ସୃଷ୍ଟି କରିବ । ଏଥିରେ ସନ୍ଦେହ ନାହିଁ ।

ସହରାଞ୍ଚଳରେ ନାଗରିକର 'କ' ଠାରୁ 'କ୍ଷ' ପର୍ଯ୍ୟନ୍ତ ଦୈନନ୍ଦିନ ଘରୋଇ ବ୍ୟାପାର ଠାରୁ ଗଣତାନ୍ତ୍ରିକ ଅଧିକାର ପର୍ଯ୍ୟନ୍ତ ସବୁଥିରେ ପୁଲିସ ହସ୍ତକ୍ଷେପର ଆଇନଗତ ପରିସର ରହିଛି । ଏଥି ସହିତ ପୁଲିସକୁ ମାଜିଷ୍ଟ୍ରେଟ କ୍ଷମତା, ଅର୍ଦ୍ଧ ବିଚାର ବିଭାଗୀୟ କ୍ଷମତା, କେତେକମାମଲାରେ ଦଣ୍ଡବିଧାନ ସ୍ୱରୂପ ଆର୍ଥିକ ଜୋରିମାନା ଆଦାୟ କ୍ଷମତା, କେତେକ କ୍ଷେତ୍ରରେ ରେଗୁଲେସନ୍ ପ୍ରଣୟନ ଭଳି କ୍ଷମତା ମଧ୍ୟ ଏହି ଆଇନ ପରିସରରେ ପୁଲିସ ପ୍ରୟୋଗ କରିପାରିବ ।

ଜନଗଣଙ୍କୁ "ଶୃଙ୍ଖଳିତ" କରିବା ପାଇଁ ୨୦୦୩ ମସିହାର ନୂଆ ଆଇନ । କିନ୍ତୁ ପୁଲିସ ବାହିନୀର "ଶୃଙ୍ଖଳା" ପାଇଁ ସେହି ବ୍ରିଟିଶ ଅମଳର ୧୮୬୧ ମସିହା ଆଇନ ପ୍ରଯୁଜ୍ୟ ହେବ । ଏଭଳିକି ପୁଲିସ ଆଇନ ପରିସରରେ କୌଣସି ପୁଲିସ ଯଦି କିଛି ବେଆଇନ କାର୍ଯ୍ୟ କରେ, ତେବେ ସରକାରଙ୍କର ବିନାନୁମତିରେ ତା ବିରୁଦ୍ଧରେ ମୋକଦ୍ଦମା କରାଯାଇ ପାରିବ ନାହିଁ । (ଧାରା-୧୧୧) । ପୁଣି ସର୍ବାଧିକ ୧ବର୍ଷ ଭିତରେ ସରକାରୀ ମଂଜୁରୀ ଆଣି କୋର୍ଟରେ ପୁଲିସ ବିରୁଦ୍ଧରେ ମୋକଦ୍ଦମା କରାନଗଲେ, ତାହା ଆଇନତଃ ଗ୍ରହଣୀୟ ହେବ ନାହିଁ (ଧାରା-୧୨୪) ।

# ସରକାର, ଶାସକ ଦଳ ଓ ପୁଲିସ

ସହରାଞ୍ଚଳ ପୁଲିସ ଆଇନ କରାଯାଇ ପୁଲିସର କ୍ଷମତା ପରିସରକୁ ବୃଦ୍ଧି କରାଯାଇଛି । କିନ୍ତୁ ରାଜ୍ୟର ପୁଲିସ ପ୍ରଶାସନକୁ ଜନବାଦୀ କରାଯିବା ପାଇଁ ୧୯୪୭ ପରଠାରୁ କୌଣସି ଉଦ୍ୟମ କରାଯାଇନାହିଁ । ଶାସକ ଗୋଷ୍ଠୀ କୌଣସି ଆନ୍ଦୋଳନରେ ନିଜର 'ସୁରକ୍ଷା' ପ୍ରଶ୍ନ ନେଇ ଏତେ ଆତଙ୍କିତ ଓ ପୁଲିସ ଉପରେ ଏତେ ନିର୍ଭରଶୀଳ ଯେ କୌଣସି ସମୟରେ ରାଜ୍ୟର ଖୋଦ୍ ମୁଖ୍ୟମନ୍ତ୍ରୀ ଯଦି କୌଣସି ଆନ୍ଦୋଳନରେ ପୁଲିସ କାର୍ଯ୍ୟାନୁଷ୍ଠାନ ପାଇଁ ଅନୁମତି ନଦିଅନ୍ତି, ତେବେ ସେ ବି ଏହି ଗୋଷ୍ଠୀର ତୀବ୍ର ରୋଷର ଶିକାର ହୁଅନ୍ତି । ଏଭଳିକି ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେବାକୁ ବାଧ୍ୟ ହୁଅନ୍ତି । ୧୯୬୪ ମସିହା ସେପ୍ଟେମ୍ବର ମାସ ୨ ତାରିଖରେ ଭୁବନେଶ୍ୱରରେ କେତେକ ଛାତ୍ର ବିଧାନସଭା ଗୃହରେ ପ୍ରବେଶ କରି "ଲଙ୍କାକାଣ୍ଡ" କରିଥିଲେ ମଧ୍ୟ ତତ୍କାଳିନ ମୁଖ୍ୟମନ୍ତ୍ରୀ ଶ୍ରୀ ବିରେନ୍ ମିତ୍ର ପୁଲିସର ହସ୍ତକ୍ଷେପକୁ ସଂପୂର୍ଣ୍ଣ ବାରଣ କରିଥିଲେ । ବିଧାନସଭା ଭଳି ଗଣତନ୍ତ୍ରର ଏକ "ପବିତ୍ର ଅନୁଷ୍ଠାନ" ପ୍ରତି ଛାତ୍ରମାନଙ୍କର ଏଭଳି "ଅଶୋଭନୀୟ" ଆଚରଣକୁ ପ୍ରତିହତ କରିପାରିନଥିବାରୁ ସେତେବେଳେ କ୍ଷମତାସୀନ ବର୍ଗ ମଧ୍ୟରେ ତୀବ୍ର ପ୍ରତିକ୍ରିୟା ସୃଷ୍ଟି ହୋଇଥିଲା । ଏଣୁ ମୁଖ୍ୟମନ୍ତ୍ରୀ ଶ୍ରୀ ବିରେନ୍ ମିତ୍ର "ନିଜ କର୍ମର ପ୍ରାୟଶ୍ଚିତ ସ୍ୱରୂପ" ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେବା ପାଇଁ ଇଚ୍ଛା ପ୍ରକାଶ କରି ପ୍ରଧାନମନ୍ତ୍ରୀ ଓ କଂଗ୍ରେସ ସଭାପତିଙ୍କୁ ପତ୍ର ଲେଖିଥିଲେ । ଅବଶ୍ୟ ପ୍ରବଳ ଜନବିରୋଧ ଯୋଗୁଁ ଶ୍ରୀ ମିତ୍ରଙ୍କୁ ନିଜର ଇସ୍ତଫା ପତ୍ର ଫେରାଇନେବାକୁ ପଡିଥିଲା *[17] (ସ୍ମୃତି-ଅନୁଭୁତି, ଶ୍ରୀ ନିଳମଣି ରାଉତରାୟ, ପୃ ୪୧୧) ପୁଣି ଏକ ଘଟଣା ୧୯୫୫ ମସିହାର ସେତେବେଳର ସମାଜବାଦୀ ନେତା ବିଧାୟକ ଶ୍ରୀ ନିଶାମଣି ଖୁଣ୍ଟିଆଙ୍କୁ ପୁଲିସ ହାତକଡ଼ି ପକାଇ କୋର୍ଟରେ ହାଜର କରାଇବା ପ୍ରସଙ୍ଗ । ଏହି ପ୍ରସଙ୍ଗରେ ଫେବୃଆରୀ ୨୨ ତାରିଖରେ ମୁଖ୍ୟମନ୍ତ୍ରୀ ଶ୍ରୀ ନବକୃଷ୍ଣ ଚୌଧୁରୀ ବିଧାନସଭାରେ ଆଲୋଚନାରେ ଭାଗ ନେଇ ହାତକଡ଼ି ଘଟଣା ଯଥାର୍ଥ ନଥିଲା ବୋଲି ପ୍ରକାଶ କରିଥିଲେ । କିନ୍ତୁ ମୁଖ୍ୟମନ୍ତ୍ରୀଙ୍କର ଏହି ଉତ୍ତର ଶାସକଦଳ ଓ ପୁଲିସ ମଧ୍ୟରେ ତୀବ୍ର ପ୍ରତିକ୍ରିୟା ସୃଷ୍ଟି କରିଥିଲା । ଏଭଳିକି ପରବର୍ତ୍ତୀ ସମୟରେ ଘରୋଇ ବିଭାଗ ଆଲୋଚନାରେ ଭାଗ ନେଇ ତତ୍କାଳୀନ ଘରୋଇ ବିଭାଗର ଉପମନ୍ତ୍ରୀ ଶ୍ରୀ ନୀଳମଣି ରାଉତରାୟ ପୁଲିସର କାର୍ଯ୍ୟ "ଯଥାର୍ଥ" ଥିଲା ବୋଲି ବିଧାନସଭାରେ

ଘୋଷଣା କରିବାକୁ ବାଧ୍ୟ ହୋଇଥିଲେ (ସ୍ମୃତି -ଅନୁଭୂତି-୫୪-୫୫)। ପୁଲିସକୁ ଆମ ରାଜ୍ୟରେ ବହୁ ସମୟରେ ମଧ୍ୟ ଦଳୀୟ କାର୍ଯ୍ୟରେ ବ୍ୟବହାର କରାଯାଏ । ଶାସକ ଦଳ ରାଜନୀତି ପାଇଁ ୧୯୪୮ ମସିହାରେ କଟକ ଜିଲ୍ଲାର ତିର୍ତ୍ତୋଲ ନିର୍ବାଚନ ମଣ୍ଡଳୀର ଉପନିର୍ବାଚନରେ ସମାଜବାଦୀ ଦଳର ପ୍ରାର୍ଥୀଙ୍କ ବିରୁଦ୍ଧରେ ପୁଲିସକୁ କଂଗ୍ରେସ ଦଳର ପ୍ରାର୍ଥୀଙ୍କ ସପକ୍ଷରେ ପ୍ରଚାର କାର୍ଯ୍ୟରେ ନିୟୋଜିତ କରାଯାଇଥିଲା। "ସେତେବେଳେ ସମାଜବାଦୀ କର୍ମୀମାନେ ଲାଲ୍‌ଟୋପି ପିନ୍ଧୁଥାଆନ୍ତି । ପ୍ରାୟ ଶହେଖଣ୍ଡେ ସାଧା ପୋଷାକ ପିନ୍ଧା ପୁଲିସ କନେଷ୍ଟବଳଙ୍କ ମୁଣ୍ଡରେ ନାଲି ଟୋପି ପନ୍ଧାଇଦେଇ ଛଦ୍ମବେଶରେ ନିର୍ବାଚନ ମଣ୍ଡଳୀରେ ଛାଡି ଦିଆଯାଇଥିଲା ସେମାନେ ଗାଁକୁ ଗାଁ ବୁଲି ସମାଜବାଦୀ କର୍ମୀ ବୋଲି ପରିଚୟ ଦେଇ ଅତି ବୀଭତ୍ସଭାବେ ପ୍ରଚାରକାର୍ଯ୍ୟ କରିଥିଲେ । ମଝିରେ ମଝିରେ ଲୋକମାନଙ୍କୁ ଧମକ ମଧ୍ୟ ଦେଉଥାନ୍ତି । ନାନାପ୍ରକାର ଭୟ ଦେଖାଇ କହୁଥାନ୍ତି, ସମାଜବାଦୀ ପ୍ରାର୍ଥୀଙ୍କୁ ଭୋଟ ନଦେଲେ ତା'ର ପ୍ରତିଶୋଧ ନିଆଯିବ । ଲୋକେ ଭାବିବାକୁ ଲାଗିଲେ ଭୋଟ ନ ପାଉଣୁ ତ ଏପ୍ରକାର ଧମକ, ଭୋଟ ପାଇଗଲା ପରେ ଆହୁରି କ'ଣ ନ ହେବ ? ଫଳରେ ସମାଜବାଦୀ ପ୍ରାର୍ଥୀ ହାରିଗଲେ"*[18]। "୧୯୭୨ ମସିହା ନଭେମ୍ବର ମାସରେ କଟକରେ ଉପନିର୍ବାଚନରେ ପ୍ରତିଦ୍ୱନ୍ଦିତା କରୁଥିବା ତତ୍କାଳୀନ କଂଗ୍ରେସ ପ୍ରାର୍ଥୀ ମୁଖ୍ୟମନ୍ତ୍ରୀ ଶ୍ରୀମତି ନନ୍ଦିନୀ ଶତପଥୀଙ୍କ ସପକ୍ଷରେ ଭୋଟ ଦେବା ପାଇଁ ଟଙ୍କା ବଣ୍ଟା ଯାଉଥିଲ। ବିରୋଧୀ ପ୍ରାର୍ଥୀ ଶ୍ରୀ ବିରେନ୍ ମିତ୍ରଙ୍କର କର୍ମୀମାନେ ଟଙ୍କା ଛଡ଼େଇ ନେଇଥିଲେ। ଏଣୁ ପୁଲିସ ଉପସ୍ଥିତିରେ କେତେକ ସ୍ଥାନରେ ଟଙ୍କା ବଣ୍ଟାଯାଇଥିଲା ବୋଲି ଶୁଣାଯାଇଥିଲା*[19]" (ସ୍ମୃତି-ଅନୁଭୂତି-୫୮ ଓ ୫୯)। ୧୯୮୧ମସିହାରେ ତତ୍କାଳୀନ କେନ୍ଦ୍ର ଗୃହମନ୍ତ୍ରୀ ଶ୍ରୀ ଜ୍ଞାନୀ ଜୈଲ ସିଂ ଏକ ସାମ୍ବାଦିକ ସମ୍ମିଳନୀରେ ଘୋଷଣା କରି କହିଥିଲେ ଯେ, କେବଳ ସରକାରର ଆଭିମୂଖ୍ୟ ନୁହେଁ, ଶାସକଦଳର ଆଭିମୂଖ୍ୟ ଅନୁସାରେ ପୁଲିସ କାର୍ଯ୍ୟ କରିବା ବିଧେୟ *[20]। ୧୯୮୪ ମସିହାରେ ଦିଲ୍ଲୀରେ ପୁଲିସ ଉପସ୍ଥିତିରେ ଶିଖମାନଙ୍କ ଉପରେ ଆକ୍ରମଣ, ୨୦୦୨ ମସିହାରେ ଗୋଧ୍ରା ଘଟଣା ନେଇ ଗୁଜୁରାଟରେ ପୁଲିସ ପ୍ରାୟୋଜିତ ଦଙ୍ଗା ଆଦି କେତେକ ଘଟଣା ଏହି ରାଜନୈତିକ ଦୃଷ୍ଟିଭଙ୍ଗୀର ବାସ୍ତବ ତଥା ମର୍ମନ୍ତୁଦ ଉଦାହରଣ। ଏଥି ସହ ଶାସନ କ୍ଷମତାରେ ଥିବା ପ୍ରଭାବଶାଳୀ ଗୋଷ୍ଠୀ-ପୁଲିସ-ଆତଙ୍କବାଦୀ ଗୋଷ୍ଠୀ ଭିତରେ ଅସାଧୁମେଣ୍ଟ କିଭଳି ସରକାରୀ ଯୋଜନା ଭଳି ବିପଦଜନକ ଯୋଜନାର

ଅନ୍ତର୍ଭୁକ୍ତ ହୋଇଛି, ତାର ଏକ ଉଦାହରଣ ଜରୁରୀକାଳୀନ ପରିସ୍ଥିତିରେ ମିଳିଥିଲା । ଓଡ଼ିଶାରେ ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କ ଶାସନ ବେଳେ ଜନୈକ ଆଇ.ଜି.ପାହ୍ୟାର ପୁଲିସ ଅଫିସରଙ୍କର ତତ୍ତ୍ୱାବଧାନରେ "ଟିସା" ନାମକ ଏକ ଘରୋଇ ଗୁଇନ୍ଦା ସଂସ୍ଥା ସରକାରୀ ଅର୍ଥରେ ପରିଚାଳନା କରାଯାଉଥିଲା (ସ୍ମୃତି-ଅନୁଭୂତି - ୫୮ଓ ୫୯)। ଓଡିଶାର ଶ୍ରୀ ନବୀନ ପଟ୍ଟନାୟକଙ୍କ ଶାସନରେ ବିରୋଧୀ ରାଜନୈତିକ କାର୍ଯ୍ୟକଳାପ ପ୍ରତି ଦୃଷ୍ଟି ରଖିବା ପାଇଁ ଗୁଇନ୍ଦା ବିଭାଗକୁ ଅତି ସକ୍ରିୟ କରାଯାଇଛି। ବି.ଜେ.ଡ଼ି.-ବି.ଜେ.ପି. ଶାସନ ବେଳେ ମୁଖ୍ୟମନ୍ତ୍ରୀ ଗୁଇନ୍ଦା ପୁଲିସ ଉପରେ ଅଧିକ ନିର୍ଭରଶୀଳ ବୋଲି କୁହାଯାଏ।

# ପୁଲିସ କାର୍ଯ୍ୟାନୁଷ୍ଠାନ ସରକାରୀ ନୀତି ଭିନ୍ନ ପୁଲିସ ହିଂସା କି

ପୁଲିସର ଲାଠିଚାର୍ଜ, ଲୁହବୁହା ବାଷ୍ପ ପ୍ରୟୋଗ, ଗୁଳିକାଣ୍ଡ, ଆକ୍ରୋଶମୂଳକ ମୋକଦ୍ଦମା ଭଳି କାର୍ଯ୍ୟାନୁଷ୍ଠାନକୁ କ'ଣ କେବଳ ପୁଲିସର ହିଂସା ଭାବେ ଗ୍ରହଣ କରିହେବ ?

ପୁଲିସର ବଳ ପ୍ରୟୋଗ ସମ୍ପର୍କରେ ଫୌଜଦାରୀ କାର୍ଯ୍ୟବିଧି ଆଇନ (Code of Criminal Procedure)ର ଧାରା ୧୨୯ରେ ବିଭିନ୍ନ ବ୍ୟବସ୍ଥା ରହିଛି । କୌଣସି ସ୍ଥାନରେ ପାଞ୍ଚ ବା ତଦୁର୍ଦ୍ଧ ବ୍ୟକ୍ତି "ବେଆଇନ ଭାବେ ଏକାଠି" ହୋଇ "ସାଧାରଣ ଅଶାନ୍ତି" ସୃଷ୍ଟି କରିବାର ଆଶଙ୍କା ଥିଲେ, ସେମାନଙ୍କୁ ସ୍ଥାନ ଛାଡି ଚାଲିଥିବା ପାଇଁ କୌଣସି କାର୍ଯ୍ୟନିର୍ବାହୀ ମାଜିଷ୍ଟ୍ରେଟ ବା ସଂପୃକ୍ତ ଥାନାର ଭାରପ୍ରାପ୍ତ ଅଫିସର ବା ସର୍ବନିମ୍ନ ଜଣେ ସବ୍ ଇନିସ୍‌ପେକ୍ଟର ପାହ୍ୟାର ପୁଲିସ ଅଫିସରଙ୍କ ପକ୍ଷରୁ ନିର୍ଦ୍ଦେଶ ଦିଆଯାଇ ପାରେ। କିନ୍ତୁ ସେମାନେ ଏହି ନିର୍ଦ୍ଦେଶକୁ ମାନି ଯଦି ସ୍ଥାନଛାଡ଼ି ନଯାଆନ୍ତି ଓ "ଗଣ୍ଡଗୋଳ" ଚାଲୁରଖନ୍ତି, ତେବେ ବଳ ପ୍ରୟୋଗ କରାଯାଇ ସେମାନଙ୍କୁ ଘଉଡ଼େଇ ଦିଆଯାଇ ପାରିବ। ଏଥିପାଇଁ ଆବଶ୍ୟକ ସ୍ଥଳେ ଗିରଫ ଓ ଅଟକ ଭଳି ପଦକ୍ଷେପ ମଧ ନିଆଯାଇପାରେ । ବିଭିନ୍ନ ଅଦାଲତର ରାୟରେ ଏହା ସ୍ପଷ୍ଟ କରାଯାଇଛି ଯେ ଏକାଠି ହୋଇଥିବା "ବେଆଇନ ଜନତା" (Un-Lawful Assembly)ଙ୍କୁ

ଘଉଡ଼େଇବା ପାଇଁ ଯେତେ କମ୍ ବଳ ପ୍ରୟୋଗକରାଯାଇପାରେ ଓ ଯେତେ କମ୍ ଧନ ଓ ଜୀବନକୁ କ୍ଷତି ଘଟାଯାଇପାରେ। ଅର୍ଥାତ ଆବଶ୍ୟକତା ଠାରୁ ଅଧିକ ବଳ ପ୍ରୟୋଗ ଆଇନତଃ ଗ୍ରହଣୀୟ ନୁହେଁ।

କୌଣସି ଗଣତାନ୍ତ୍ରିକ ଆନ୍ଦୋଳନରେ ପୁଲିସର ବଳ ପ୍ରୟୋଗ ସ୍ପୃହଣୀୟ କି ନୁହେଁ, ତାହା ଅବଶ୍ୟ ମୂଳ ପ୍ରଶ୍ନ । ଏହି ପ୍ରଶ୍ନ ସହ ଗଣତାନ୍ତ୍ରିକ ମୂଲ୍ୟବୋଧର ସଂପର୍କ ରହିଛି । ସେଥିପ୍ରତି ସରକାରଙ୍କର ଦୃଷ୍ଟିଭଙ୍ଗୀ ସକରାତ୍ମକ ନୁହେଁ । ବରଂ ଅନ୍ୟପକ୍ଷରେ ଦେଖାଯାଏ ଯେକୌଣସି ଆନ୍ଦୋଳନ କ୍ଷେତ୍ରରେ ସରକାରୀ ଭାବେ ସାର୍ବଜନୀନ ଘୋଷଣା ହୁଏ "ଆଇନ ଶୃଙ୍ଖଳା ପରିସ୍ଥିତି ଯେ କୌଣସି ମୂଲ୍ୟ ବଦଳରେ ରକ୍ଷା କରାଯିବ" (Law and Order shall be maintained at any cost)। ଏପରିକି ୧୯୮୦ ମସିହାରେ ଗୋଟିଏ ଘଟଣାରେ ଓଡ଼ିଶାର ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ "ଦେଖିଲା ମାତ୍ରେ ଗୁଳିକର" (Shoot at sight) ବୋଲି ନିର୍ଦ୍ଦେଶ ଦେଇଥିବା ବିଷୟ ସଂବାଦ ପତ୍ରରେ ପ୍ରକାଶ ପାଇଥିଲା। ଯାହା ଆଇନତଃ ଗ୍ରହଣୀୟ ନୁହେଁ।

ନିର୍ଦ୍ଦିଷ୍ଟ ଭାବେ କୌଣସିଠାରେ ପୁଲିସର କାର୍ଯ୍ୟାନୁଷ୍ଠାନ ହେଲେ ସରକାର ଏହି ବିଷୟକୁ ନିରପେକ୍ଷ ଭାବେ ଆଇନଗତ ପରିସରରେ ବି ଦେଖନ୍ତି ବୋଲି ସନ୍ଦେହ କରିବାରେ ଯଥେଷ୍ଟ କାରଣ ରହିଛି। ଓଡିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ତଥା ଘରୋଇ ବିଭାଗ ଦାୟିତ୍ୱରେ ବହୁ ବର୍ଷ ମନ୍ତ୍ରୀ ରିହଥିବା ସ୍ୱର୍ଗତଃ ନୀଳମଣି ରାଉତରାୟଙ୍କର ଆତ୍ମଜୀବନୀ "ସ୍ମୃତି-ଅନୁଭୂତି" ପୁସ୍ତକରେ ଏ ସଂପର୍କରେ କିଛି ସନ୍ଦେଶ ମିଳେ। ତାଙ୍କ ଭାଷାରେ "ଅତି ସାବଧାନତାର ସହିତ ମାଜିଷ୍ଟ୍ରେଟଙ୍କ ଆଦେଶ ଓ ତତ୍ତ୍ୱାବଧାନରେ ଗୁଳି ହୋଇଥାଏ"। "ଏକଥା ସତ୍ୟ ଯେ ଗୁଳି କରିବାକୁ ତୁଚ୍ଛାଟାରେ କୌଣସି ଅଫିସର ଆଦେଶ ଦିଅନ୍ତି ନାହିଁ ।" "ବିବେକ ଓ ବିବେଚନା ଶକ୍ତି ଖଟାଇ ସେମାନେ ଆଦେଶ ଦେଇଥାଆନ୍ତି"। ଗୁଳିକାଣ୍ଡ ଭଳି ଘଟଣାର ତଦନ୍ତ ପାଇଁ ଯେଉଁ କମିଶନ ବସାଯାଏ, ତା'ର ଉଦ୍ଦେଶ୍ୟ ସଂପର୍କରେ ସ୍ୱର୍ଗତ ରାଉତରାୟଙ୍କର ମତ ଯେ, "କାର୍ଯ୍ୟାନୁଷ୍ଠାନର ଯଥାର୍ଥତା ସଂବନ୍ଧରେ ଲୋକଙ୍କ ମନରୁ ସନ୍ଦେହ ଦୂର କରିବା ମଧ୍ୟ ସରକାରଙ୍କର କର୍ତ୍ତବ୍ୟ"। ସମ୍ଭବତଃ କେବଳ "ସନ୍ଦେହ ଦୂର କରିବା" ଉଦ୍ଦେଶ୍ୟ ଥିବା କାରଣରୁ ପୁଲିସ ଗୁଳିକାଣ୍ଡ ସଂବନ୍ଧରେ ଯେତେଗୁଡିଏ ତଦନ୍ତ କମିଶନ ବସାଯାଏ, ତା'ର ତଦନ୍ତ ପରିସରକୁ

ଅତି ସଂଙ୍କୁଚିତ ଓ ସୀମିତ ରଖାଯାଇଥାଏ। "ଗୁଳିକାଣ୍ଡ ପୂର୍ବ ଘଟଣାକ୍ରମର ବିଶ୍ଲେଷଣ" (Analysis of Circumstances leading to the incident of firing) ଭଳି କେତେ ତଦନ୍ତ ବିଷୟ ରଖାଯାଏ। ଫଳାଫଳ ସରକାରଙ୍କ ଇଚ୍ଛାମତେ ଉପଲବ୍ଧ ହୁଏ । ୧୯୬୪ ମସିହାରେ ରେଭେନ୍‌ସା କଲେଜ୍ ହତାରେ ଅଧ୍ୟକ୍ଷଙ୍କ ବିନାନୁମତିରେ ପୁଲିସ ପଶି ଛାତ୍ରଙ୍କ ଉପରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବା ଠାରୁ ଆରମ୍ଭ କରି ୨୦୦୦ ମସିହାରେ ରାୟଗଡ଼ା ଜିଲ୍ଲା କାଶିପୁର ଠାରେ ଅଲୁମିନା ପ୍ରକଳ୍ପକୁ ବିରୋଧ କରୁଥିବା ଆନ୍ଦୋଳନକାରୀଙ୍କ ଉପରରେ ମାଇକଞ୍ଚ ଠାରେ ଗୁଳି ଚଳାଇ ୩ଜଣ ଆଦିବାସୀଙ୍କୁ ନିହତ କରିବା ପର୍ଯ୍ୟନ୍ତ, ସବୁ ତଦନ୍ତ କମିଶନ୍‌ର ରିପୋର୍ଟ ମୋଟାମୋଟି ସରକାରୀ ଇଚ୍ଛା ଅନୁସାରେ ହୋଇଛି। ଏହା ସତ୍ତ୍ୱେ ବି ସରକାର ତଦନ୍ତ କମିଶନର ରିପୋର୍ଟକୁ ବିଧାନ ସଭାରେ ପେସ୍ କରିବାରେ ଟାଳଟୁଳ ନୀତି ଅବଲମ୍ବନ କରନ୍ତି । ୨୦୦୪ ମସିହାର ପୂର୍ବ ୫ ବର୍ଷ ଭିତରେ ଓଡ଼ିଶାରେ ୧୦ ଗୋଟି ବିଭିନ୍ନ ବିଭାଗୀୟ ତଦନ୍ତ କମିଶନ ସରକାରଙ୍କ ପକ୍ଷରୁ ବସାଯାଇଛି। ସେଥିମଧ୍ୟରୁ ୬ ଗୋଟିର ତଦନ୍ତ ରିପୋର୍ଟ ସରକାରଙ୍କର ହସ୍ତଗତ ହୋଇଛି *21। ଏଥି ମଧ୍ୟରୁ କେବଳ ମାଇକଞ୍ଚ ଗୁଳିକାଣ୍ଡ ତଦନ୍ତ କମିଶନର ରିପୋର୍ଟ ବହୁ ବିଳମ୍ବରେ ପ୍ରବଳ ଚାପଯୋଗୁଁ ବିଧାନସଭାରେ ଆଗତ ହୋଇଥିଲା। ଚିଲିକା ଗୁଳିକାଣ୍ଡ ତଦନ୍ତ ୨୦୦୫ ମସିହାରେ ସରକାରଙ୍କର ହସ୍ତଗତ ହୋଇଥିଲେ ମଧ୍ୟ ସର୍ବସାଧାରଣରେ ପ୍ରକାଶ କରାଯାଇନାହିଁ।

ମାଇକଞ୍ଚ ଠାରେ ପୁଲିସର ଗୁଳିକାଣ୍ଡ ଘଟଣାରେ ସରକାରଙ୍କର ଆଭିମୂଖ୍ୟ ବିଷୟରେ କମିଶନ ରିପୋର୍ଟ ସହ ସରକାରଙ୍କର ଯେଉଁ କାର୍ଯ୍ୟାନୁଷ୍ଠାନ ରିପୋର୍ଟ (ATR) ବିଧାନସଭାରେ ଆଗତ ହୋଇଛି, ସେଥିରୁ ବେଶ୍ ସନ୍ଦେଶ ମିଳେ । ତଦନ୍ତ ରିପୋର୍ଟରେ କୁଳିକାଣ୍ଡକୁ ଅଯଥାର୍ଥ କୁହାଯାଇ ନଥିଲେ ମଧ୍ୟ ଗୁଳିକାଣ୍ଡ ଯଥାର୍ଥ ଥିଲା ବୋଲି କେଉଁଠାରେ କୁହାଯାଇ ନାହିଁ ଏବଂ ଏହା "ମାତ୍ରାଧିକ" ଥିଲା ବୋଲି କୁହାଯାଇଥିଲା । ତତ୍କାଳୀନ ଏସ୍.ପି., ମାଜିଷ୍ଟ୍ରେଟ, ଡ଼ି.ଏସ୍.ପି. ପୁଲିସ ଇନିସ୍‌ପେକ୍ଟର ଭଳି ବିଭିନ୍ନ ପଦ ପଦବୀର ଅଧିକାରୀ ମାନଙ୍କର "ଅପରିଣାମଦର୍ଶୀ" କାର୍ଯ୍ୟ, ଏହି ଗୁଳିକାଣ୍ଡ ପାଇଁ ଦାୟୀ ଥିଲା ବୋଲି ତଦନ୍ତ କମିଶନ ତାଙ୍କ ରିପୋର୍ଟରେ ଦର୍ଶାଇଥିଲେ। କିନ୍ତୁ ସରକାର ତାଙ୍କର କାର୍ଯ୍ୟାନୁଷ୍ଠାନ ରିପୋର୍ଟରେ ଗୁଳିକାଣ୍ଡ 'ଯଥାର୍ଥ' ବୋଲି କମିଶନ୍‌ଙ୍କ ରିପୋର୍ଟରେ ଅଛି ବୋଲି

କୁହାଯାଇଥିଲା। ଗୁଳିଚାଳନା ପାଇଁ ଦାୟୀ କର୍ମକର୍ତ୍ତାଙ୍କ ବିରୁଦ୍ଧରେ କିଛି "କାର୍ଯ୍ୟାନୁଷ୍ଠାନ" ପାଇଁ ତଦନ୍ତ କମିଶନଙ୍କ ପକ୍ଷରୁ ସୁପାରିଶ ହୋଇ ନାହିଁ ବୋଲି ଏହି (ATR) ରେ ଉଲ୍ଲେଖ କରାଯାଇଥିଲା।

ଏଥିସହ "ବିକାଶ"କୁ ବିରୋଧ ହେଲେ ପୁଲିସ କାର୍ଯ୍ୟାନୁଷ୍ଠାନ ଅବଶ୍ୟମ୍ଭାବୀ ବୋଲି ସରକାରଙ୍କ ସାଂପ୍ରତିକ ସାର୍ବଜନୀନ ଘୋଷିତ ନୀତି ବୋଲି ଜଣାପଡ଼େ। ଶିଳ୍ପ ଓ ଆଇନ ମନ୍ତ୍ରୀ ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ, ଘୋଷଣା କରି କହିଥିଲେ ଯେ ଶିଳ୍ପ ବିରୋଧୀ ଲୋକମାନଙ୍କୁ ଦୃଢ ହସ୍ତରେ ଦମନ କରାଯିବ। ଏକ୍ଷେତ୍ରରେ କେବଳ ସରକାର ନୁହେଁ, ବିଚାରପତିଙ୍କର ଦୃଷ୍ଟିଭଙ୍ଗୀ ସଂପର୍କରେ ମଧ୍ୟ ଅଙ୍ଗୁଳି ନିର୍ଦ୍ଦେଶ ହେଉଛି। ଉଦାହରଣତଃ ୨୦୦୦ ମସିହାରେ ଉତ୍କଳ ଆଲୁମିନା ପ୍ରକଳ୍ପକୁ ବିରୋଧ କରୁଥିବା ଆନ୍ଦୋଳନକାରୀଙ୍କ ଉପରେ ମାଇକଞ୍ଚ ଠାରେ ପୁଲିସର ଗୁଳିଚାଳନା ଓ ୩ ଜଣଙ୍କର ମୃତ୍ୟୁ ଘଟଣାରେ ନିଯୁକ୍ତ କମିଶନ ବିଚାରପତି ଶ୍ରୀ ପି.କେ. ମିଶ୍ର ତାଙ୍କ ରିପୋର୍ଟରେ ତଦନ୍ତ ପରିସରର ବିଷୟ ଉପରେ ଯଥାଯଥ ଧ୍ୟାନ ଦେଇନଥିବା ସ୍ଥଳେ, 'ବିକାଶ'ର ଧାରା କିଭଳି ହେବ, ସେ ପ୍ରସଙ୍ଗରେ ନିଜର ବ୍ୟକ୍ତିଗତ ମତାମତ ଦେଇଥିଲେ। "ପାହାଡ଼ିଆ ଅଂଚଳ ପାରମ୍ପାରିକ କୃଷି ପାଇଁ ଅନୁପଯୁକ୍ତ *22" (ତଦନ୍ତ କମିଶନ୍ ରିପୋର୍ଟ, ପୃ-୨୧୩) ଓ ପରିବେଶ ପାଇଁ ରାଜ୍ୟରେ ଶିଳ୍ପର ପ୍ରଗତିକୁ ଗତିରୋଧ କରାଯିବା ଯଥାର୍ଥ ନୁହେଁ ବୋଲି ବିଚାରପତି ଶ୍ରୀ ମିଶ୍ର ତାଙ୍କ ରିପୋର୍ଟରେ ଦର୍ଶାଇ ଉଲ୍ଲେଖ କରିଥିଲେ ଯେ "("India & Particularly Orissa can not forgo industrial development so as to live forever in penury..........." *23)(ପୃଷ୍ଠା-୨୧୬)

ଉଲ୍ଲେଖଯୋଗ୍ୟ ଯେ, ତଦନ୍ତର ପରିସର ମଧ୍ୟରେ ଏସବୁ ବିଷୟ ନଥିଲା ଅନ୍ୟପକ୍ଷରେ ମାତ୍ରାଧିକ ଗୁଳିକାଣ୍ଡ ହୋଇଥିଲେ ମଧ୍ୟ ଦାୟୀ ସରକାରୀ କର୍ମକର୍ତ୍ତାମାନଙ୍କ ବିରୁଦ୍ଧରେ କି କାର୍ଯ୍ୟାନୁଷ୍ଠାନ ଆଇନତଃ ଗ୍ରହଣୀୟ, ସେ ସଂପର୍କରେ ଏହି ରିପୋର୍ଟ ସଂପର୍ଣ୍ଣ ନୀରବ ଥିଲା। ସତେ ଯେପରି ଶିଳ୍ପକୁ ବିରୋଧ କରୁଥିବା ଲୋକ 'ବିକାଶକୁ' ବିରୋଧ କରୁଥିବାରୁ ସେମାନଙ୍କ 'କୃତକର୍ମ' ପାଇଁ କିଛି ଲୋକ ପୁଲିସ ଗୁଳିରେ ନିହତ ହେବା ଅସ୍ୱାଭାବିକ ନୁହେଁ।

# ଆଇନ ଶୃଙ୍ଖଳା ପ୍ରସଙ୍ଗ, ପୁଲିସ ଓ ବିଗ୍ଭରପତି

ଆଇନ, ଶୃଙ୍ଖଳା ପ୍ରସଙ୍ଗରେ ବିଗ୍ଭରପତି ମାନଙ୍କର ଭୂମିକା ମଧ୍ୟ ଆଲୋଚନା ବିଷୟ ହୋଇପଡ଼ୁଛି ।

୧୯୬୪ ମସିହା ସେପ୍ଟେମ୍ବର ମାସରେ ଭୁବନେଶ୍ୱରର କେତେଜଣ ଛାତ୍ର ଓଡିଶା ବିଧାନସଭାରେ ପଶି 'ଗଣ୍ଡଗୋଳ' କରିଥିଲେ ମଧ୍ୟ ପୁଲିସ କୌଣସି କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିନଥିଲା । ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ବିରେନ୍ ମିତ୍ର ପୁଲିସ ଉପରେ ସଂପୂର୍ଣ୍ଣ କଟକଣା କରିଦେଇଥିଲେ । ସେହିବର୍ଷ ଶେଷ ଭାଗରେ ରେଭେନ୍ସା କଲେଜ ହତାରେ ଛାତ୍ରମାନଙ୍କ ବିରୁଦ୍ଧରେ କିନ୍ତୁ ପୁଲିସ କାର୍ଯ୍ୟାନୁଷ୍ଠାନ ହୋଇଥିଲା । ପୁଲିସ କାର୍ଯ୍ୟାନୁଷ୍ଠାନ ସଂପର୍କରେ ଓଡିଶା ହାଇକୋର୍ଟର ବିଗ୍ଭରପତି ଶ୍ରୀ ସତ୍ୟଭୂଷଣ ବର୍ମନ୍ଙ୍କ ଦ୍ୱାରା ତଦନ୍ତ କରାଯାଇଥିଲା । ସେପ୍ଟେମ୍ବର ମାସରେ ଛାତ୍ରମାନେ ବିଧାନସଭାରେ ପ୍ରବେଶ କରି ଲଙ୍କାକାଣ୍ଡ କରିବା ପରେ ମଧ୍ୟ ପୁଲିସର କାର୍ଯ୍ୟାନୁଷ୍ଠାନ ଯୋଗୁ "ପ୍ରଶାସନର ଦୁର୍ବଳତା"ର ପରିପ୍ରକାଶ ଘଟିଥିଲା ବୋଲି ବିଗ୍ଭରପତି ଶ୍ରୀ ବର୍ମନ ତାଙ୍କ ରିପୋର୍ଟରେ ଦର୍ଶାଇ ଥିଲେ । ଏଣୁ ଛାତ୍ରମାନେ ଭାବିଲେ ସେମାନେ "ଯାହାଇଚ୍ଛା ତାହା କଲେ ମଧ୍ୟ" ପୁଲିସ ସେମାନଙ୍କର କିଛି କରିବ ନାହିଁ ଓ ଛାତ୍ରମାନଙ୍କର ଏହି ମନସ୍ତତ୍ତ୍ୱ, ସାରା ରାଜ୍ୟରେ ଛାତ୍ର ଆନ୍ଦୋଳନ ମୁଣ୍ଡ ଟେକିବାର ପ୍ରାଥମିକ କାରଣ ଥିଲା । "X X X X they thought they could succeed in any matter that they chose to take up with the Government. This psychology among the students was the primary cause of Students agitation all over Orissa." *24 (ସ୍ମୃତି ଓ ଅନୁଭୂତି, ପୃ-୪୧୩) । ଏହାକୁ ତତ୍କାଳୀନ ଘରୋଇ ଉପମନ୍ତ୍ରୀ ଶ୍ରୀ ନୀଳମଣି ରାଉତରାୟ ମଧ୍ୟ "ସରକାରଙ୍କର ଦୁର୍ବଳତା" ପଦାରେ ପଡିଲେ "ତା'ର ପରିଣତି କ'ଣ ହୁଏ ଗୋଟିଏ ମାସ ନ ପୂରୁଣୁ ତାହା ଆମ୍ଭେମାନେ ଅନୁଭବ କରିଥିଲୁ" ବୋଲି ନିଜ ଆତ୍ମଜୀବନୀରେ ଲେଖିଥିଲେ *25 । ବିଧାନସଭାରେ ଛାତ୍ରଙ୍କ ଉପରେ ପୁଲିସର କାର୍ଯ୍ୟାନୁଷ୍ଠାନ ନ

ହେବା ଘଟଣାକୁ ଆଖିରେ ରଖି ସେ ଏହା କହିଥିଲେ। ଅର୍ଥାତ ୧୯୬୪ ମସିହା ସେପ୍ଟେମ୍ବର ମାସରେ ଭୁବନେଶ୍ୱରରେ ଛାତ୍ରମାନଙ୍କୁ ପୁଲିସ ସାବାଡ଼ କରିଦେଇଥିଲେ, କଟକର ଛାତ୍ରମାନେ ଆଉ ଏକ ଘଟଣାକୁ ନେଇ ମୁଣ୍ଡ ଉଠାଇ ପାରିନଥାଆନ୍ତେ ଏବଂ ଓଡିଶାରେ ଛାତ୍ର ଆନ୍ଦୋଳନର ପ୍ରାଥମିକ କାରଣ ରହିନଥାନ୍ତା ! "ପୁଲିସର କାର୍ଯ୍ୟାନୁଷ୍ଠାନ" ମତଲବ୍ "ପ୍ରଶାସନର ଦୃଢତା" ଓ ପ୍ରଶାସନର ଦୃଢତା ଅର୍ଥ, କୌଣସି ଭବିଷ୍ୟତ ଆନ୍ଦୋଳନର ବନ୍ଧ ବାନ୍ଧିବା - ଏହି ଆଭିମୁଖ୍ୟ ୧୯୬୪ ମସିହାର ଛାତ୍ର ଆନ୍ଦୋଳନ ସଂପର୍କରେ ତଦନ୍ତ କରିଥିବା ବିଋରପତି ବର୍ମନ କମିଶନଙ୍କର ମନ୍ତବ୍ୟରୁ ପ୍ରମାଣ ମିଳେ । ପରିଶିଷ୍ଟ ସବୁକୁ ବାଦ୍ ଦେଇ ୧୦୨୩ ପୃଷ୍ଠା ସମ୍ବଳିତ ଏହି ତଦନ୍ତ ରିପୋର୍ଟରେ ପୁଲିସର କାର୍ଯ୍ୟାନୁଷ୍ଠାନ 'ଯଥାର୍ଥ' ବୋଲି କୁହାଯାଇଥିଲା "X X X X that the police entry & Chase into the college campus was justified." । ୭୦ ଦଶକରେ ରାଜ୍ୟରେ ଜନତାପାର୍ଟି ଦଳର ଶାସନରେ ଭୁବନେଶ୍ୱର, ବ୍ରହ୍ମପୁର, ଭବାନୀପାଟଣା ଓ ଜଗତସିଂହପୁର ପ୍ରଭୃତି ଯେଉଁଠାରେ ପୁଲିସ ଗୁଳି ହୋଇଥିଲା, ସେଠାରେ ପୁଲିସର "ମାତ୍ରାଧିକ ବଳ" ପ୍ରୟୋଗ ହୋଇନାହିଁ ବୋଲି ତଦନ୍ତ କମିଶନ୍ ରିପୋର୍ଟରେ ଦର୍ଶାଯାଇଥିବା ବିଷୟ ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ନିଳମଣି ରାଉତରାୟଙ୍କ ଦ୍ୱାରା ଲିଖିତ ଆତ୍ମଜୀବନୀରୁ ଜଣାପଡ଼େ (ସ୍ମୃତି ଓ ଅନୁଭୂତି- ପୃ-୪୩୦)।

କେବଳ "ଆଇନ ଶୃଙ୍ଖଳା" ଓ "ବିକାଶ" ପ୍ରସଙ୍ଗରେ ସରକାର ନିଜର ନୀତିକୁ ପୁଲିସର ବଳ ପ୍ରୟୋଗ ଜରିଆରେ ବଜାୟ ରଖିବାକୁ ଋହୁଁଛି, ତା ନୁହେଁ ଅଦାଲତ ଗୁଡିକର ଧାରା ମଧ୍ୟ ସେହିଭଳି ଜମି, ଜଳ, ଜଙ୍ଗଲ, ଆଦି ମୌଳିକ ସମସ୍ୟାକୁ ନେଇ ହେଉଥିବା ମାର୍କସବାଦୀ-ଲେନିନ୍‌ବାଦୀ-ମାଓବାଦୀ ଆନ୍ଦୋଳନ ହେଉ, ଅବା ଅନ୍ୟ ଜନ ଆନ୍ଦୋଳନ ହେଉ, କୌଣସି ଆନ୍ଦୋଳନକାରୀଙ୍କୁ/ସମର୍ଥକଙ୍କୁ ଜାମିନ୍ ମିଳିବା ଆଉ ଏକ ସାଧାରଣ ଘଟଣା ନୁହେଁ। ଏଥିସହ ବାରିପଦା ଠାରେ ୨୦୦୪ ମସିହାରେ ଡକାୟତି ପାଇଁ ପ୍ରସ୍ତୁତ ଅଭିଯୋଗରେ ସନ୍ଦିଗ୍ଧ ନକ୍‌ସଲ ବୋଲି କୁହାଯାଉଥିବା ୧୦ ଜଣଙ୍କ ମଧ୍ୟରୁ ୩ଜଣଙ୍କୁ ୩୧ ବର୍ଷ ଜେଲଦଣ୍ଡ, ଜଣେ ମହିଳାଙ୍କ ସମେତ ୭ଜଣଙ୍କୁ ୧୬ ବର୍ଷ ଜେଲଦଣ୍ଡ *26 ଏବଂ ମାନ୍ଦ୍ରାବାଜୁ ଠାରେ ପୁଲିସ ଗୁଳିକାଣ୍ଡରେ ୭ଜଣ ଆଦିବାସୀ

୩୦, ଡ଼ିସେମ୍ବର ୧୯୯୯ ମସିହାରେ ନିହତ ହେବାପରେ, ୪ ଜଣ ଆଦିବାସୀଙ୍କୁ ଆଜୀବନ ଜେଲଦଣ୍ଡ (ଏପରିକି ଏଥି ମଧ୍ୟରୁ ଦୁଇଜଣଙ୍କୁ ଭୁଲ ଚିହ୍ନଟ କ୍ରମେ ଦଣ୍ଡବିଧାନ ହୋଇଛି ବୋଲି ଅଭିଯୋଗ) ପାରଳାଖେମୁଣ୍ଡିର ଅତିରିକ୍ତ ଫୌଜଦାରୀ ଅଦାଲତ ପକ୍ଷରୁ ତା ୨୩:୦୬:୨୦୦୫ରିଖରେ ଆଦେଶ ହୋଇଛି *27। କେବଳ ଆନ୍ଦୋଳନ କ୍ଷେତ୍ରରେ ନୁହେଁ ସାଧାରଣ ଭାବେ "ଜୀବନରୁ ମାରିଦେବି ବୋଲି" ଧମକ ଅଭିଯୋଗ (ଭାରତୀୟ ପିଙ୍ଗଳ କୋଡ଼ ଧାରା-୫୦୬) ଭଳି ସାଧାରଣ ମାମଲାରେ ପୁଲିସ ଗିରଫ କଲେ, ନିମ୍ନ ଅଦାଲତରେ ଆଉ ଜାମିନ୍ ମିଳିବା ସମ୍ଭବ ହେଉନାହିଁ। "Jail is general, bail is exception" ନୀତି ବର୍ତ୍ତମାନ ଅଦାଲତଗୁଡିକରେ ପ୍ରଚଳିତ। ସରକାର, ଶାସକ ଗୋଷ୍ଠୀ, ଏଭଳିକି ଅଦାଲତ ପକ୍ଷରୁ "ଆଇନ, ଶୃଙ୍ଖଳା" ଓ "ଆନ୍ଦୋଳନ" ବିଷୟକୁ କିଭଳି ଶ୍ରେଣୀ ଦୃଷ୍ଟିଭଙ୍ଗୀରେ ନିଆଯାଏ, ତାହା ଗତ କେଇବର୍ଷ ତଳେ ରାଜ୍ୟରେ ଶ୍ରୀ ନବୀନ ପଟ୍ଟନାୟକଙ୍କ ନେତୃତ୍ୱରେ ଗଠିତ ବି.ଜେ.ପି. - ବି.ଜେ.ଡ଼ି. ଶାସନ ବେଳର ଏକ ଘଟଣାକୁ ଏକ ଉଦାହରଣ ବିଚାର କରା ଯାଇପାରେ। "ଗଣତନ୍ତ୍ରର ପବିତ୍ର ଅନୁଷ୍ଠାନ" ବୋଲି କୁହାଯାଉଥିବା, ଓଡ଼ିଶା ବିଧାନସଭା ହତାରେ ଜଣେ ବରିଷ୍ଠ ହିନ୍ଦୁତ୍ୱବାଦୀ ସଂଗଠକଙ୍କ ନେତୃତ୍ୱରେ ବିଶ୍ୱହିନ୍ଦୁ ପରିଷଦ ସହ ସଂପୃକ୍ତ କେତେକ ବ୍ୟକ୍ତି ଉଶୃଙ୍ଖଳ କାର୍ଯ୍ୟ କରିଥିଲେ। ୧୯୬୪ ମସିହା ସେପ୍ଟେମ୍ବର ମାସରେ ଭୁବନେଶ୍ୱରର କେତେକ ଛାତ୍ରଙ୍କର ବିଧାନସଭା ଭିତରେ "ଅନୁପ୍ରବେଶକୁ" ଓ "ଲଙ୍କାକାଣ୍ଡ"କୁ ଯେଉଁ ପ୍ରତିକ୍ରିୟାଶୀଳ ଗୋଷ୍ଠୀ, ଗଣମାଧ୍ୟମ ଏହାକୁ 'ଗଣତନ୍ତ୍ର' ଉପରେ ଆକ୍ରମଣ ବୋଲି ଗୁରୁତର ଅଭିଯୋଗ କରିଥିଲେ, ସେହି ଗୋଷ୍ଠୀ, ଗଣମାଧ୍ୟମ ଏତେବେଳେ କିନ୍ତୁ ଏହାକୁ ଏକ ସ୍ୱାଭାବିକ ଓ ସାଧାରଣ ଘଟଣାଭାବେ ଗ୍ରହଣ କରିନେଇ ଯାଇଥିଲେ! ସୁବିଧାବାଦୀ ସହରୀ ମଧ୍ୟବିତ୍ତଗୋଷ୍ଠୀ ଯେକୌଣସି କ୍ଷେତ୍ରରେ 'ସୁରକ୍ଷା' ପ୍ରଶ୍ନକୁ ନେଇ ଯେତେ ବିବ୍ରତ ହୋଇପଡ଼ନ୍ତି, କିନ୍ତୁ ଏକ୍ଷେତ୍ରରେ ଆପତତଃ ଅବିଚଳିତ ରହିଥିବା ଦେଖାଯାଇଥିଲା। "ଗଣତନ୍ତ୍ରର ପବିତ୍ର ଅନୁଷ୍ଠାନ" ଉପରେ ଆକ୍ରମଣ କରିଥିବା ହିନ୍ଦୁତ୍ୱବାଦୀ ଗୋଷ୍ଠୀର ନେତାଙ୍କୁ ଭୁବନେଶ୍ୱରରେ ଅବସ୍ଥାପିତ ଖୋର୍ଦ୍ଧା ସେସନସ୍ କୋର୍ଟ ପକ୍ଷରୁ ଅତି ସହଜରେ ଜାମିନ୍ ମିଳିଯାଇଥିଲା।

# ଭୁସଂସ୍କାର - ସରକାର ଓ ଆଇନ-ଶୃଙ୍ଖଳା ପ୍ରସଙ୍ଗ

କାହାର ଆଇନ-ଶୃଙ୍ଖଳା ରକ୍ଷା ପାଇଁ ପୁଲିସ ବ୍ୟବସ୍ଥା କରାଯାଉଛି ବୋଲି ଯେଉଁ ସଂଦେହ ହୁଏ, ତାହା ଭୂସଂସ୍କାର କ୍ଷେତ୍ରରେ ଓଡିଶାର ମନ୍ଥର ଗତି ସଂବନ୍ଧରେ ୧୯୬୭ ମସିହାରେ କେନ୍ଦ୍ର ଯୋଜନା କମିଶନ ପକ୍ଷରୁ ହୋଇଥିବା କୋରୀର ଜବାବରେ ଓଡିଶା ସରକାରଙ୍କ ପକ୍ଷରୁ ଦିଆଯାଇଥିବା ଉତ୍ତରରୁ ସଂକେତ ମିଳେ । ସରକାରଙ୍କ ପକ୍ଷରୁ କୁହାଗଲା : "It goes without saying that in any law regulating the relationship between Landlord & tenant, the social structure plays an important role. As the social structure is not within the control of the govt., It would not be advisable for government to take suomoto action in enforcing any law relating to Landlord & tenant, as such a step is likly to seriously upset the social structure creating bigger problem & in particular, problems of law & order" *28 - ଏଥିରୁ ଜଣାପଡ଼େ ଯେ ଜମିଦାର, ପୁଞ୍ଜିପତିମାନଙ୍କ ଭଳି ସାମାଜିକ ଶକ୍ତିର (Social Forces) ସ୍ୱାର୍ଥକୁ ବିରୋଧ ହେଲେ, ସ୍ଥିତାବସ୍ଥା ଉପରେ ଆଞ୍ଚ ଆସିବ ଓ ଆଇନ ଶୃଙ୍ଖଳା ପରିସ୍ଥିତି ବଡ଼ ଆକାରରେ ସୃଷ୍ଟି ହେବ ବୋଲି ସରକାରଙ୍କର ଉଦବେଗ ରହିଛି । ଏହି ପ୍ରତିକ୍ରିୟାଶୀଳ ସାମାଜିକଶକ୍ତିକୁ ଭୟ କରି ସରକାର ଶୋଷଣ ବନ୍ଦ କରିବା, ବୈଷମ୍ୟ କମେଇବା, ଆଦି ପ୍ରଗତିଶୀଳ ପଦକ୍ଷେପ ନେବ ନାହିଁ । ଏଣୁ ସ୍ଥିତାବସ୍ଥା ବଜାୟ ସହ ଆଇନ-ଶୃଙ୍ଖଳା ରକ୍ଷାର ସାମଞ୍ଜସ୍ୟ ରହିଥିବା ବିଷୟରେ ଏହି ସରକାରୀ ନଜିର ମିଳୁଛି ।

# କୃଷକ ଆନ୍ଦୋଳନ-ଜମିଦାର ଓ ପୁଲିସ

ଜମିଦାରମାନଙ୍କ ବିରୁଦ୍ଧରେ ୧୯୪୮ ମସିହାରେ ଓଡିଶାର ବିଭିନ୍ନ ଅଞ୍ଚଳରେ ଚାଷୀମାନଙ୍କ ଆନ୍ଦୋଳନ ଦେଖା ଦେଇଥିଲା । ଗଂଜାମ ଜିଲ୍ଲାରେ ଏହି ଆନ୍ଦୋଳନ ଅଧିକ ସଂଗଠିତ ରୂପ ନେଇଥିଲା । "ତାକରଡ଼ା ଗାଁର ସବୁ ଚାଷୀ ମାନଙ୍କୁ ଜମି ଦେବା ପାଇଁ ରୟତ ସଂଗଠନ ସହିତ ମାଜିଷ୍ଟ୍ରେଟ ଗୋପୀନାଥ

ମହାନ୍ତିଙ୍କ ନେତୃତ୍ୱରେ ଏକ ରାଜିନାମା ହେଲା। କିନ୍ତୁ ଶେରଗଡ଼ ଜମିଦାର ଏଥିରେ ରାଜି ହେଲେ ନାହିଁ। ତେଣୁ ଆନ୍ଦୋଳନ ତିବ୍ରତର ହେଲା। ଫଳରେ ରୟତ ନେତାମାନଙ୍କ ବିରୁଦ୍ଧରେ ସରକାରଙ୍କ ପକ୍ଷରୁ ଓ୍ୱାରେଣ୍ଟ ଜାରି କରାଗଲା *[29]।"

"୧୯୪୮ ମସିହା ମେ, ୨୪ ତାରିଖ ଅପରାହ୍ନ ଘରିଟା ବେଳେ ଗଂଜାମର ଡ଼ି.ଏସ୍.ପି.ଙ୍କ ନେତୃତ୍ୱରେ ତିନି ଗାଡି ସଶସ୍ତ୍ର ପୁଲିସ ଡାକରଡ଼ା ଗାଁରେ ପଶିଥିଲେ। ଗାଁରେ ସେତେବେଳେ ଯେଉଁ ପୁରୁଷ ଓ ସ୍ତ୍ରୀ ଲୋକମାନେ ଥିଲେ ପୁଲିସ ଗାଡ଼ି ପାଖକୁ ଯିବାରୁ ସେମାନଙ୍କ ଉପରକୁ ପୁଲିସ ଆଖିବୁଜା ଗୁଳି ଚଳାଇଥିଲା। ସଙ୍ଗେ ସଙ୍ଗେ ଛଅ ଜଣ ଗୁଳି ଚ୍ଚେଟରେ ମରି ପଡିଲେ ଓ ୫୦ ଜଣ କ୍ଷତ,ବିକ୍ଷତ ହେଲେ *[30]।" ସଂପ୍ରତି ସୁଧାରବାଦୀ ଅର୍ଥନୀତିରେ ପୁଞ୍ଜିର ବିକାଶକୁ ସରକାର ଯେ ଭଳି ପ୍ରାଧାନ୍ୟ ଦେଉଛି ସେହିପରି ୧୯୪୮ ମସିହାରେ ଜମିଦାରୀ ବ୍ୟବସ୍ଥା ସପକ୍ଷରେ ସରକାର ଥାଇ ପୁଲିସକଳକୁ ଆନ୍ଦୋଳନକାରୀ ଚଷୀମାନଙ୍କ ବିରୁଦ୍ଧରେ ବ୍ୟବହାର କରିଥିଲା।

## ଶିକ୍ଷାକେନ୍ଦ୍ର - ପୁଲିସ କ୍ୟାମ୍ପ

ଶିକ୍ଷା କେନ୍ଦ୍ର ଚଳାଇବା ଅପେକ୍ଷା ପୁଲିସ କ୍ୟାମ୍ପ ଉପରେ ସରକାରଙ୍କର ଅଧିକ ଗୁରୁତ୍ୱ ଥିବାର ନଜିର ଅଛି। ୧୯୯୮ ମସିହାରେ ଗଂଜାମ ଜିଲ୍ଲାର ଗୋପାଳପୁର ଅଂଚଳରେ ଟାଟା କଂପାନୀ ପକ୍ଷରୁ ଇସ୍ପାତ ପ୍ରକଳ୍ପ ପ୍ରତିଷ୍ଠାକୁ ସ୍ଥାନୀୟ ଲୋକମାନେ ବିରୋଧ କରୁଥିଲେ। ସେହି ଗାଁ ଗୁଡିକ ବିଶେଷ କରି ସିନ୍ଧି ଗାଁ ଓ କାଳିପଲ୍ଲୀ ଗାଁର ଲୋକମାନଙ୍କୁ ପୁଲିସ ବନ୍ଧୁକ, ଲାଠି ଓ ବୁଲ୍‌ଡ଼ୋଜର ସାହାଯ୍ୟରେ ବଳପୂର୍ବକ ଉଚ୍ଛେଦ ଉଦ୍ୟମ ସଫଳ ହୋଇନଥିଲା। ଏଣୁ ସିନ୍ଧିଗାଁରେ ଲୋକମାନଙ୍କୁ ଆତଙ୍କିତ କରାଯିବା ଉଦ୍ଦେଶ୍ୟରେ ସେହି ଗାଁର ଉନ୍ନୀତ ମଧ ଇଂରାଜୀ ବିଦ୍ୟାଳୟକୁ ଅସ୍ଥାୟୀ ସଶସ୍ତ୍ର ପୁଲିସ ଛାଉଣୀରେ ପରିଣତ କରି ଦିଆଯାଇଥିଲା । କାଳିପଲ୍ଲୀ ଗାଁର ଲୋକମାନଙ୍କ ଉପରେ ଚ୍ଚପ ସୃଷ୍ଟି କରିବା ଲକ୍ଷ୍ୟରେ ସେହି ଗାଁର ସ୍କୁଲକୁ ସ୍ଥାନୀୟ ଜିଲ୍ଲାପାଳଙ୍କ ଆଦେଶରେ ବନ୍ଦ

କରି ଦିଆଯାଇଥିଲା । ଏହି ଦୁଇଟି ଗାଁର ଲୋକମାନେ ଥଇଥାନ କଲୋନୀକୁ ନ ଯାଇଥିଲେ ମଧ୍ୟ, ଏହି ଗାଁ ଦ୍ୱୟର ସ୍କୁଲକୁ ବନ୍ଦ କରି ଦିଆଯିବା ଦ୍ୱାରା ଏହି ସ୍କୁଲ ଉପରେ ନିର୍ଭର କରୁଥିବା ୧୨ଖଣ୍ଡ ଗାଁର ପିଲାମାନେ ପାଠପଢାରୁ ବଂଚିତ ହୋଇଥିଲେ।

ଏସଂପର୍କରେ ଓଡିଶା ହାଇକୋର୍ଟ ଓ ଓଡିଶା ମୁଖ୍ୟମନ୍ତ୍ରୀଙ୍କ ଦୃଷ୍ଟି ଆକର୍ଷଣ କରାଯାଇଥିଲା। କିନ୍ତୁ କୌଣସି ସୁଫଳ ମିଳିନଥିଲା *[31]। (ଟାଟା ଭକ୍ତ ମୁଖ୍ୟମନ୍ତ୍ରୀ ଓ ଜିଲ୍ଲାପାଳଙ୍କୁ ଚିଠି, ପ୍ରଫୁଲ୍ଲ ସାମନ୍ତରା, ୧୦/୦୭/୯୮)

# ପୁଲିସର ଗିରଫ କ୍ଷମତା ଓ ବ୍ୟକ୍ତି ସ୍ୱାଧୀନତା

କୌଣସି ଅଭିଯୋଗରେ ଜଣେ ନାଗରିକଙ୍କୁ ଗିରଫ କରାଯିବା, ଥାନାରେ ଅଟକ ରଖାଯିବା, ହାତକଡ଼ା ପକାଇ ରାସ୍ତାରେ ଚଲେଇ, ଚଲେଇ, ନିଆଯାଇ କୋର୍ଟରେ ହାଜର କରାଇବା ଭଳି ପୁଲିସର କାର୍ଯ୍ୟକଳାପ ଆଇନର ପରିସରରେ ହେଉଛି ବୋଲି ଧାରଣା ଦିଆଯାଉଛି । ଫୌଜଦାରୀ କାର୍ଯ୍ୟବିଧି ଆଇନର ୪୧,୪୨, ୪୩, ୧୨୯(୨), ୧୫୧, ୪୩୨ (୩) ଧାରାନୁସାରେ ପୁଲିସର ଗିରଫ କରିବା କ୍ଷମତା ରହିଛି । ଏଥି ସହ ପୁଲିସ ଧର୍ତ୍ତବ୍ୟ ଅପରାଧରେ ଅନ୍ୟ ଆଇନ ବଳରେ ମଧ୍ୟ ପୁଲିସର ଗିରଫ କରିବା କ୍ଷମତା ରହିଛି।

ପୁଲିସର ଗିରଫ କରିବା କ୍ଷମତା ସହିତ ବ୍ୟକ୍ତି ସ୍ୱାଧୀନତା ଅଧିକାରର ଘନିଷ୍ଠ ସମ୍ପର୍କ ରହିଛି। ଆମ ଦେଶରେ ସମ୍ରାଜ୍ୟବାଦୀ ବ୍ରିଟିଶ୍ ଶାସନରେ ବ୍ୟକ୍ତି ସ୍ୱାଧୀନତାର ଅଧିକାର ଉପରେ ଅଧିକ ହସ୍ତକ୍ଷେପ ହେଉଥିବାରୁ ତାହା ବିରୁଦ୍ଧରେ ପ୍ରବଳ ଜନ ପ୍ରତିବାଦ ହୋଇଥିଲା। ବ୍ରିଟିଶ୍ ଶାସନରେ ଯେଉଁ ନିବାରଣ ମୂଳକ ଅଟକ ଆଇନକୁ ସମ୍ପୂର୍ଣ୍ଣ ବିରୋଧ କରାଯାଉଥିଲା, ଦେଶର ନୂଆ ସଂବିଧାନ କାର୍ଯ୍ୟକାରୀ ହେବାର ପ୍ରାୟ ଏକ ମାସ ଭିତରେ ସେହି ଭଳି ଏକ ନିବାରଣ ମୂଳକ ଆଇନ ପ୍ରଣୟନ କରାଯାଇ କେରଳର ଜନୈକ କମ୍ୟୁନିଷ୍ଟ ନେତା ଏ.କେ. ଗୋପାଳନ୍‌ଙ୍କୁ ଜେଲ୍‌ରେ ଅଟକ ରଖାଯାଇଥିଲା। 'ସ୍ୱାଧୀନତା'ର ବୟସ ବୃଦ୍ଧି ସହିତ ନିବାରଣ ମୂଳକ ଅଟକ ଆଇନ ଓ ବ୍ୟକ୍ତି ସ୍ୱାଧୀନତାକୁ ସଂକୁଚିତ

କଲାଭଳି 'ଟାଡ଼ା', ପୋଟା, ନାସା, ସେନାବାହିନୀ ସ୍ୱତନ୍ତ୍ର ଆଇନ ଭଳି ବହୁତ ଆଇନ ପ୍ରଣୟନ କରାଯାଇଛି । ପୁଣି ପୁଲିସର ମାତ୍ରାଧିକ କାର୍ଯ୍ୟକଳାପ ଯୋଗୁଁ ଏହି ସଂକୁଚିତ ବ୍ୟକ୍ତି ସ୍ୱାଧୀନତାରେ ମଧ୍ୟ ଅଧିକ ଆଞ୍ଚ ଆସୁଛି ।

ପୁଲିସର ଗିରଫ କରିବାର କ୍ଷମତା ଅଧିକ ଦୁରୁପଯୋଗ ହେଉଥିବା ବିଷୟରେ ଜାତୀୟ ପୁଲିସ କମିଶନ୍ ରିପୋର୍ଟ ଦେଇଛନ୍ତି । ପୁଲିସ ବିଭାଗରେ ଯେଉଁ ଦୁର୍ନୀତି ହୁଏ, ଗିରଫ କ୍ଷମତା ତା'ର ମୂଖ୍ୟ କାରଣ ବୋଲି ଜାତୀୟ ପୁଲିସ କମିଶନ୍ ତାଙ୍କ ରିପୋର୍ଟରେ ସରକାରଙ୍କୁ ଜଣାଇ ଦେଇଛନ୍ତି । ୬୦ ଭାଗ ଗିରଫ ଘଟଣା ଅଦରକାରୀ ଅବା ଅଯଥାର୍ଥ । ପୁଲିସର କ୍ଷମତାର ଏହି ଦୁରୁପଯୋଗ କାରଣରୁ ଜେଲ ବିଭାଗର ମଧ୍ୟ ଅଧିକ ଖର୍ଚ୍ଚ ହୁଏ । ସେଥିପାଇଁ "ଗିରଫ" କ୍ଷମତାକୁ ସୀମିତ କରାଯିବା ପାଇଁ ପୁଲିସ କମିଶନ ପକ୍ଷରୁ ଦ୍ୱତୀୟ ରିପୋର୍ଟରେ ସରକାରଙ୍କୁ ସୁପାରିଶ କରାଯାଇଥିଲା *32 ।

ଗିରଫ କ୍ଷମତାର ଦୁରୁପଯୋଗ, ଜାତୀୟ ପୁଲିସ କମିଶନ୍‌ର ରିପୋର୍ଟ ତଥା ବ୍ୟକ୍ତି ସ୍ୱାଧୀନତାର ଗୁରୁତ୍ୱ ଆଦି କାରଣରୁ ପୁଲିସ ଗିରଫ କରିବା କ୍ଷମତା ଉପରେ କେତେକ କଟକଣା କରାଯିବା ପାଇଁ ଯୋଗୀନ୍ଦର କୁମାର *33 ଏବଂ ଡ଼ି.କେ. ବସୁ *34 ମାମଲାରେ ସୁପ୍ରିମକୋର୍ଟଙ୍କ ପକ୍ଷରୁ ନିର୍ଦ୍ଦେଶାବଳୀ ଦିଆଯାଇଛି । ଗିରଫ ସମୟରେ ସଂପୃକ୍ତ ବ୍ୟକ୍ତିଙ୍କର ନିକଟତର ବ୍ୟକ୍ତିଙ୍କୁ 'ହାଜତ ମେମୋ' ପ୍ରଦାନ, ଇଣ୍ଟୋରଗେସନ୍ ବେଳେ ପୁରା ସମୟ ପାଇଁ ନହେଲେ ମଧ୍ୟ କିଛି ସମୟ ପାଇଁ ଓକିଲ ଉପସ୍ଥିତ ରହିପାରିବେ; ଆଦି କେତେକ ଆଦେଶ ଦେଶର ସର୍ବୋଚ୍ଚ ଅଦାଲତ ପକ୍ଷରୁ ଦିଆଯାଇଛି । ଯେ କୌଣସି ଏକ ଅଭିଯୋଗ ମିଳିଲେ, ଅଭିଯୁକ୍ତଙ୍କୁ ଗତାନୁଗତିକ ଧାରାରେ ଗିରଫ କରାନଯିବା ପାଇଁ ମଧ୍ୟ ଓଡିଶା ପୁଲିସ ନିୟମରେ ରହିଛି । ପୁଲିସର ଗିରଫ କରିବାର କ୍ଷମତା ରହିଛି ବୋଲି ସବୁ ମୋକଦ୍ଦମାରେ ସେ ଅଭିଯୁକ୍ତଙ୍କୁ ଗିରଫ କରିବ, ତାହା ଯଥାର୍ଥ ହୋଇନପାରେ । ଗିରଫ ପଛରେ ସେଭଳି ବିଶେଷ କାରଣ ରହିଥିବା ଆବଶ୍ୟକ । ଗୁରୁତର ଅଭିଯୋଗ ନଥିଲେ କାହାକୁ ଗିରଫ କରିବାଟାକୁ ନିଶ୍ଚିତ ରୂପେ ଏଡାଇ ଯିବା ଠିକ୍ ହେବ ବୋଲି ଓଡିଶା ପୁଲିସ ନିୟମରେ ରହିଛି ("X X X Except in henious offences an arrest must be avoided". (Rule-221)) ।

ଥାନାକୁ ଯେଭଳି ଯେ କୌଣସି ସମୟରେ ପୁଲିସ ଡ଼କାଇ ନେଉଛି, ତାହା ଏହି ଆଇନତଃ ଗ୍ରହଣୀୟ ନୁହେଁ। କୌଣସି ବ୍ୟକ୍ତିଙ୍କୁ ଗିରଫ କରାନଯାଇ ଥାନାକୁ ଡ଼କାଯାଇ ପାରିବ ନାହିଁ (ଓଡ଼ିଶା ପୁଲିସ ନିୟମ-୨୨୧)। ଜାମିନ୍ ଯୋଗ୍ୟ ମୋକଦ୍ଦମାରେ ପୁଲିସ ପକ୍ଷରୁ ଜାମିନ୍‌ରେ ଛାଡିବା ପାଇଁ ଆଇନଗତ ବାଧ୍ୟବାଧକତା ରହିଛି। ଜାମିନ୍ ଅଯୋଗ୍ୟ ମୋକଦ୍ଦମାରେ ମଧ୍ୟ ଯେଉଁଥିରେ ମୃତ୍ୟୁଦଣ୍ଡର ବ୍ୟବସ୍ଥା ନାହିଁ, ସେଥିରେ ଥାନାରୁ ଜାମିନ୍ ପ୍ରଦାନ କରାଯାଇପାରେ। ଥାନାରେ କୌଣସି ବ୍ୟକ୍ତିଙ୍କୁ ୨୪ ଘଣ୍ଟାରୁ ଅଧିକ ସମୟ ଅଟକ ରଖାଯାଇ ପାରିବ ନାହିଁ। ଏହା ନାଗରିକର ମୌଳିକ ଅଧିକାର ପରିସରଭୁକ୍ତ। ସେହିଭଳି ହାତକଡ଼ି ପକାଇ କୋର୍ଟକୁ ନେବା ବା ଜେଲ୍‌କୁ ନେବା "ଆପାତତଃ ବେଆଇନ, ଅସାମ୍ବିଧାନିକ ଓ ଅମାନୁଷିକ" ବୋଲି ସୁପ୍ରିମକୋର୍ଟ ରାୟ ଦେଇଛନ୍ତି। ସବୁଦିନ ରାଜ୍ୟର ରାଜଧାନୀ ଠାରୁ ଆରମ୍ଭ କରି ଆଦିବାସୀ ଅଂଚଳ ପର୍ଯ୍ୟନ୍ତ ସବୁଠାରେ ଏହି ନିୟମ ଗୁଡିକୁ ପ୍ରାୟତଃ ପୁଲିସ ଦ୍ୱାରା ପାଳନ କରାଯାଏ ନାହିଁ ଓ ମାନବିକ ଅଧିକାର ହନନ କରାଯାଏ। ଯେଉଁ କେତେକ କ୍ଷେତ୍ରରେ ଆଇନଗତ ବାଧ୍ୟତା ଥାଏ, ତାହା କେବଳ କାଗଜପତ୍ରରେ ପାଳନ କରାଯାଏ। ପି.ୟୁ.ସି.ଏଲ., ଭୁବନେଶ୍ୱର ଓ କଟକ ଶାଖା ପକ୍ଷରୁ ଏ ସଂପର୍କରେ ଏକ ସର୍ଭେ କରାଯାଇ ସର୍ଭେ ରିପୋର୍ଟ ସମ୍ପର୍କରେ ସରକାରଙ୍କର ଦୃଷ୍ଟି ଆକର୍ଷଣ କରାଯାଇଥିଲେ ମଧ୍ୟ ପରିସ୍ଥିତିରେ ସାମାନ୍ୟ ଉନ୍ନତି ଘଟିନାହିଁ।

ଜଙ୍ଗଲ ଉପରେ ପାରମ୍ପରିକ ଅଧିକାର ଥିବା ଆଦିବାସୀଟିଏ ସାମାନ୍ୟ ୫୦ ଟଙ୍କାର ଜଙ୍ଗଲଜାତ ଦ୍ରବ୍ୟ ବେଆଇନ ଭାବେ ବ୍ୟବହାର କରିବା ଅଭିଯୋଗରେ ମୋକଦ୍ଦମାରେ ପଡ଼େ। ବର୍ଷ, ବର୍ଷ ଧରି କୋର୍ଟ କଚେରୀକୁ ଦୌଡ଼େ। ଓଡିଶାରେ ଏହିଭଳି ୧୧ ହଜାରରୁ ଅଧିକ ଆଦିବାସୀଙ୍କ ନାମରେ ମୋକଦ୍ଦମା ରହିଛି। ମୋକଦ୍ଦମା ପ୍ରତିହାର ପାଇଁ ସରକାର ୨୦୦୪ରୁ ଘୋଷଣା କରିଥିଲେ ମଧ୍ୟ ଏପର୍ଯ୍ୟନ୍ତ ତାହା କାର୍ଯକାରୀ ହୋଇନାହିଁ। ଏହିଭଳି ସାଧାରଣ ନାଗରିକଟିକୁ ଶୃଙ୍ଖଳିତ କରିବା ପାଇଁ ପୁଲିସ ରହିଛି। କିନ୍ତୁ ପୁଲିସକୁ ଶୃଙ୍ଖଳିତ କରିବ କିଏ? ଏଥିପାଇଁ ଏକ ମାମଲାରେ ଦେଶର ସର୍ବୋଚ୍ଚ ଅଦାଲତ ପକ୍ଷରୁ ଉଦ୍‌ବେଗର ସହ ପ୍ରଶ୍ନ କରାଯାଇଛି। "Who will police the police" *35 (A.I.R. 1981 Supreme court oage No.625)

# ପୁଲିସ ଏନ୍‌କାଉଣ୍ଟର- ସରକାରୀ ଆତଙ୍କବାଦ

ପୁଲିସ ସହ "ଗୁଳି ବିନିମୟ"ରେ କେହି ମୃତ ହେଲେ ମଧ୍ୟ ତା'ର ଏକ ବିଶ୍ୱାସନୀୟ ଅନୁସଂଧାନ ହେବା ସାମ୍ବିଧାନିକ ବାଧ୍ୟବାଧକତା ଓ ଗଣତାନ୍ତ୍ରିକ ଆବଶ୍ୟକତା । କିନ୍ତୁ ଆମ ରାଜ୍ୟରେ ଏଭଳି ଉଦାହରଣର ଅଭାବ ରହିଛି । ୧୯୯୦-୯୫ରେ ଜନତାଦଳ ସରକାର ବେଳେ ଖୋଦ୍ ଭୁବନେଶ୍ୱରରେ ବଡ଼ଗଡ଼ ଥାନାର ତତ୍କାଳୀନ ଇନିସ୍‌ପେକ୍ଟର ଜନୈକ 'ଅପରାଧୀ'ଙ୍କୁ ଗିରଫ କରିବା ଆଳରେ ଗୁଳିକରି ମାରିଥିଲେ। ଏ ସମ୍ପର୍କରେ କୌଣସି ଅନୁସଂଧାନ ହୋଇଛି ବୋଲି କୁହାଯାଇପାରିବ ନାହିଁ। ସଶସ୍ତ୍ର ରାଜନୀତି କରୁଥିବା ମାଓବାଦୀମାନଙ୍କ କ୍ଷେତ୍ରରେ 'ଏନ୍‌କାଉଣ୍ଟର'ରେ ମରିବା ଏକ ମାମୁଲି ଘଟଣା ! ଆନ୍ଧ୍ରପ୍ରଦେଶରେ ଏହିଭଳି ଶହ, ଶହ ବିପ୍ଳବୀ ରାଜନୀତି କରୁଥିବା ମହିଳା ଓ ପୁରୁଷଙ୍କୁ 'ଏନ୍‌କାଉଣ୍ଟର' ଜରିଆରେ ମାରିଦିଆଯାଇଛି । କେତେକ କ୍ଷେତ୍ରରେ ଜାତୀୟ ମାନବିକ ଅଧିକାର କମିଶନ୍ ମଧ୍ୟ ତଦନ୍ତ କରି ଘଟଣାର "ଆପାତତଃ ସତ୍ୟାସତ୍ୟ ଅଛି" ବୋଲି କହି କାର୍ଯ୍ୟାନୁଷ୍ଠାନ ନିର୍ଦ୍ଦେଶ ଦେଇଛନ୍ତି ।

ଦକ୍ଷିଣ ଓଡିଶାରେ ମାଓବାଦୀ ରାଜନୀତି କରୁଥିବା ବା ସେମାନଙ୍କର ସମର୍ଥକମାନଙ୍କ ମଧ୍ୟରୁ ଗତ କିଛିବର୍ଷ ଭିତରେ ଦୁଇଜଣ ମହିଳାଙ୍କ ସମେତ ୫ ଜଣ ବ୍ୟକ୍ତି 'ଏନକାଉଣ୍ଟର'ରେ ମରିଛନ୍ତି । "୨୦୦୩ ମସିହା ମାର୍ଚ୍ଚ ମାସ ୩୦ ତାରିଖରେ ସି.ପି.ଆଇ. (ଏମ୍.ଏଲ୍) ପିପୁଲ୍‌ସ ଓ୍ୱାରର ଏକ ବୈଠକସ୍ଥଳ ଉପରେ ଓଡିଶା ଓ ଆନ୍ଧ୍ରପ୍ରଦେଶ ସରକାରଙ୍କର ପୁଲିସ ମିଳିତ ଆକ୍ରମଣ କରି ଦଣ୍ଡାସୀ ସବର (ବାଲିପାଙ୍ଗା) ଏବଂ ଦମୟନ୍ତୀ ମାଝୀ (ପାଇକପୁଡ଼ା)ଙ୍କୁ ହତ୍ୟା କରିଥିଲା'*36 (ଋଷୀମୂଳିଆ ସମିତି ଡ଼ିଭିଜନାଲ୍ କମିଟି ଡ଼ିଭାଜନାଲ୍ କମିଟି ଦ୍ୱାରା ପ୍ରକାଶିତ ଦମନ" (ପୃ-୧୭)। ପୁଣି ୨୦୦୫ ଫେବୃଆରୀ ମାସରେ ମାଲକାନାଗିର ଠାରେ ଜଣେ ମହିଳାଙ୍କ ସମେତ ଦୁଇଜଣ ନକ୍‌ସଲଙ୍କୁ ପୁଲିସ ଏନ୍‌କାଉଣ୍ଟରରେ ମାରିଛି *37। ୨୦୦୫ରେ ପଦିଆ ମାଢି ନାମକ ଜଣେ ଆଦିବାସୀ ମଧ୍ୟ ପୁଲିସ ଏନ୍‌କାଉଣ୍ଟରରେ ମରିଛନ୍ତି । ଏଥି ସହ ୧୯୭୨ ଠାରୁ ୨୦୦୫ ନଭେମ୍ବର ଭିତରେ ଓଡିଶାରେ ସଶସ୍ତ୍ର ଆନ୍ଦୋଳନକାରୀ ବା ତାଙ୍କର

ସମର୍ଥକଙ୍କ ମଧ୍ୟରୁ ୫୦ ଜଣ ପର୍ଯ୍ୟନ୍ତ ବିପ୍ଳବୀଙ୍କୁ ପୁଲିସ ମିଥ୍ୟା ଏନକାଉଣ୍ଟରରେ ମାରିଛି ବୋଲି ଅଭିଯୋଗ ହେଉଛି। ଜାତୀୟ ମାନବିକ ଅଧିକାର କମିଶନ୍‌ଙ୍କ *38 (ମାର୍ଚ୍ଚ, ୨୯ମସିହା-୧୯୯୭) ଅନୁସାରେ ଭାରତୀୟ ପିଙ୍ଗଳ କୋଡ୍ (ଆଇ.ପି.ସି.) ୩୯୯ ଧାରାରେ ଏନ୍‌କାଉଣ୍ଟର କ୍ଷେତ୍ରରେ ମୋକଦ୍ଦମା କରାଯିବା ଏବଂ ସି.ଆଇ.ଡ଼ି. ବ୍ରାଞ୍ଚ ଦ୍ୱାରା ଅନୁସଂଧାନ କରାଯିବା ପାଇଁ ନିର୍ଦ୍ଦେଶ ଥିଲେ ମଧ୍ୟ ଏସବୁ କ୍ଷେତ୍ରରେ ତାହା ପାଳନ କରାଯାଇନାହିଁ।

କେବଳ ସଶସ୍ତ୍ର ଆନ୍ଦୋଳନ କରୁଥିବା ବା ସେମାନଙ୍କର ସମର୍ଥକ ନୁହଁନ୍ତି, ଏଭଳିକି ସଶସ୍ତ୍ର ଆନ୍ଦୋଳନ ଚାଲୁଥିବା ଅଂଚଳରେ ସାଧାରଣ ଆଦିବାସୀ ମଧ୍ୟ ପୁଲିସ ଗୁଳିରେ ନିହତ ହେଲେ ଲୋକ ଦେଖାଣିଆ ତଦନ୍ତଟିଏ ହେଉନାହିଁ ! ୧୯୯୯ ମସିହା ଡ଼ିସେମ୍ବର ୩୦ ତାରିଖରେ ମାନ୍ଦ୍ରାବାଜୁରେ ପୁଲିସର ଗୁଳି ଚାଳନାରେ ୭ ଜଣ ଆଦିବାସୀ ନିହତ ହୋଇଥିଲେ। ଫୌଜଦାରୀ କାର୍ଯ୍ୟବିଧି ଆଇନର ୧୨୯ ଧାରାନୁସାରେ ଏହି ଗୁଳିକାଣ୍ଡ 'ଯଥାର୍ଥ' ଥିଲା କି ନାହିଁ ସେ ସଂବନ୍ଧରେ ସାର୍ବଜନୀନ ତଦନ୍ତଟିଏ ଏ ପର୍ଯ୍ୟନ୍ତ ହେଲାନାହିଁ। ଅନ୍ୟପକ୍ଷରେ ୩୨ ଜଣଙ୍କ ବିରୁଦ୍ଧରେ ଚାର୍ଜସିଟ୍ କୋର୍ଟରେ ଦାଖଲ କରାଯାଇଥିଲା। ଚାରି ଜଣ ଆଦିବାସୀଙ୍କୁ ଗିରଫ କରାଯାଇ କୋର୍ଟରେ ଦୋଷୀ ସାବ୍ୟସ୍ତ କରାଯାଇଥିଲା। କାହାକୁ ଗୁଳିକରି ମାରିବାର କ୍ଷମତା ପୁଲିସର ନାହିଁ। ଧର୍ତ୍ତବ୍ୟ ଅପରାଧରେ ମୋକଦ୍ଦମା କରିବା, ଅନୁସଂଧାନ କରିବା କ୍ଷମତା ପୁଲିସର। ବିଚାର କରି ଦଣ୍ଡ ଦେବାର କ୍ଷମତା ପୁଲିସର ନାହିଁ। ପୁଲିସ ଗୁଳିରେ କୌଣସି ବ୍ୟକ୍ତି ମରିବା, ବଂଚିବାର ମୌଳିକ ଅଧିକାର ପରିପ୍ରେକ୍ଷୀରେ ଆଦୌ ଏକ ମାମୁଲି ଘଟଣା ହୋଇନପାରେ। କିନ୍ତୁ ଏ ସବୁ କ୍ଷେତ୍ରରେ ସରକାର ଯେଉଁ ନୀତି ଗ୍ରହଣ କରୁଛନ୍ତି, ତାହା ପୁଲିସକୁ ଏଭଳି ଏକ ଲାଇସେନ୍‌ସ ପ୍ରଦାନ କଲାଭଳି ହେଉଛି ଯେ, ସେ ଯାହାକୁ ଇଚ୍ଛା ତାକୁ ଗୁଳି କରି ମାରି ଦେଇପାରେ। ଆବଶ୍ୟକତା ଦୃଷ୍ଟିରୁ ("Doctrine of necessity") ପୁଲିସର ଏହି କାର୍ଯ୍ୟାନୁଷ୍ଠାନ ସଂବନ୍ଧରେ ତଦନ୍ତଟିଏ ହେଲେ ପୁଲିସର କାର୍ଯ୍ୟ ବାଧାପ୍ରାପ୍ତ ହେବ, ଏହି ଆଶଙ୍କାରେ ଏଭଳି ଘଟଣାକୁ ସରକାର ସ୍ୱାଭାବିକ ନୀତିରେ ଗ୍ରହଣ କରିନେଉଛି !

କିନ୍ତୁ ପୁଲିସର ମାତ୍ରାଧିକ କାର୍ଯ୍ୟକଳାପ ସଶସ୍ତ୍ର ବିପ୍ଳବୀ ଅବା ଅନ୍ୟ ଆନ୍ଦୋଳନକାରୀଙ୍କ ପାଇଁ କେବଳ ବିପଜ୍ଜନକ ହେବ, ତାହା ଭାବିବା ଠିକ୍ ନୁହେଁ। ଶାସକ ଗୋଷ୍ଠୀର, ବିରୋଧୀ ଦଳର ନେତାମାନଙ୍କ ପ୍ରତି ମଧ୍ୟ ଏହା ପ୍ରଯୁଜ୍ୟ। ୧୯୮୪ ମସିହା ବୁର୍ଲା ଛାତ୍ର ଆନ୍ଦୋଳନ ବେଳେ ଭୁବନେଶ୍ୱର ପି.ଏମ୍.ଜି. ଠାରେ ତତ୍କାଳୀନ ଜନୈକ ବରିଷ୍ଠ ବିରୋଧୀ ଦଳ ବିଧାୟକଙ୍କ ସରକାରୀ ବାସଭବନରେ ସଶସ୍ତ୍ର ପୁଲିସ ପ୍ରବେଶ କରି ବହୁ ବରିଷ୍ଠ ବିଧାୟକଙ୍କୁ ଆଖିବୁଜା ମାଡ଼ ମାରିବା, 'ସଣ୍ଡେ' ପତ୍ରିକାର ଓଡିଶା ପ୍ରତିନିଧି ସ୍ୱରୂପ ଜେନାଙ୍କୁ ମରଣାନ୍ତକ ଆକ୍ରମଣ କରିବା ଏବଂ ୯୦ ଦଶକରେ ପଚ୍ଚାମୁଣ୍ଡାଇରେ ଏକ ବିକ୍ଷୋଭର ନେତୃତ୍ୱ ଦେଉଥିବା ବେଳେ ବିଧାୟକ ରାଧାକାନ୍ତ ସେଠୀଙ୍କୁ ପୁଲିସ ପିଟି, ପିଟି କ୍ଷତ ବିକ୍ଷତ କରିଦେବା, ୧୯୯୬ ମସିହାରେ ଭୁବନେଶ୍ୱର ଓକିଲମାନଙ୍କୁ ଓଡିଶା ସଚିବାଳୟଠାରେ ପୁଲିସ ପକ୍ଷରୁ ମରଣାନ୍ତକ ଆକ୍ରମଣ କରିବା, ନିକଟ ଅତୀତରେ ପୁରୀର ଓକିଲଙ୍କ ଉପରେ ଆକ୍ରମଣ ଓ ଜଣେ ଓକିଲଙ୍କର ମୃତ୍ୟୁ ଭଳି ପୁଲିସର ନୃଶଂସ କାର୍ଯ୍ୟ ମଧ୍ୟରୁ, ଏସବୁ କିଛି ଉଦାହରଣ ମାତ୍ର। ଏଭଳି ସ୍ଥଳେ ସାଧାରଣ ନାଗରିକର ଜୀବନ କେତେ ସୁରକ୍ଷିତ ତାହା ଏକ ବଡ଼ ପ୍ରଶ୍ନବାଚୀ।

ଏଣୁ କୌଣସି ପରିସ୍ଥିତିରେ ଓ କୌଣସି ଆଳରେ ସରକାରୀ ଆତଙ୍କବାଦକୁ ପ୍ରଶ୍ରୟ ଦିଆଗଲେ ସୀମିତ ଗ୍ରଣତନ୍ତ୍ର ଦୃଷ୍ଟିରୁ ମଧ୍ୟ ବିପଜ୍ଜନକ ହେବ ।

# ଏ ପର୍ଯ୍ୟନ୍ତ ପୁଲିସ କେଉଁ ପକ୍ଷରେ ରହିଆସିଛି

ପୁଲିସ ବ୍ୟବସ୍ଥାର ଆରମ୍ଭ, କ୍ରମବିକାଶ ଓ ଆଧୁନିକରଣ ପ୍ରକ୍ରିୟାକୁ ସୂକ୍ଷ୍ମଭାବେ ବିଶ୍ଳେଷଣ କଲେ ଜଣାପଡ଼େ ଯେ, ୧୭୯୩ ମସିହାରେ ଯେତେବେଳେ ଦେଶର ଜମିଜମା ଗୁଡିକର ଚିରସ୍ଥାୟୀ ବନ୍ଦୋବସ୍ତ କରାଗଲା, ମୋଟାମୋଟି ଦୁଇଟି ଦ୍ୱନ୍ଦାତ୍ମକ ଶ୍ରେଣୀ ଯଥା : ଜମିଦାର (ଜମିମାଲିକ) ଓ ପ୍ରକୃତ ଚଷୀ (ଜମିହୀନ ଦାସ) ସୃଷ୍ଟି ହେଲା ଓ ଚଷୀମାନଙ୍କର ଦୁର୍ଦ୍ଦଶା ବୃଦ୍ଧି ପାଇଲା। ଏଥି ଯୋଗୁଁ ସାମାଜିକ ସଂଘର୍ଷ ସୃଷ୍ଟି ହୋଇଥିଲା *[୨୨]। ଏହାକୁ ମୁକାବିଲା କରିବା ପାଇଁ

ସେତେବେଳେ ସାମ୍ରାଜ୍ୟବାଦୀ ବ୍ରିଟିଶ ସରକାର ପକ୍ଷରୁ ପୋଲିସ ବ୍ୟର୍ବସ୍ଥା ଲାଗୁ କରାଯାଇଥିଲା। ଡାକରଡ଼ା ଋଷୀ ଆନ୍ଦୋଳନରୁ କାଶୀପୁର ବକ୍‌ସାଇଟ୍ ଲୁଣ୍ଠନ ବିରୋଧୀ ଆନ୍ଦୋଳନ, ତଥାକଥିତ ବିକାଶ ନୀତିକୁ ବିରୋଧ କରି ହେଉଥିବା ଆନ୍ଦୋଳନ, ଆଦିବାସୀର ଜମି ଅଧିକାର, ଜଙ୍ଗଲ ଉପରେ ପାରମ୍ପରିକ ଅଧିକାର ପ୍ରଶ୍ନ ନେଇ ସଶସ୍ତ୍ର ଆନ୍ଦୋଳନ, ସବୁ କ୍ଷେତ୍ରରେ ଦେଖାଯାଉଛି ଯେ, ସାଧାରଣ ଜନତାଙ୍କ ବିପକ୍ଷରେ ପୁଲିସ ଠିଆ ହୋଇଛି। ପୁଣି ୯୦ ଦଶକରେ ସୁଧାରବାଦୀ ଅର୍ଥନୀତିର ଆନୁଷ୍ଠାନକିକରଣ କରାଯିବା ପରେ ପ୍ରଯୁକ୍ତି ବିଦ୍ୟା, ବୃହତ ପୁଞ୍ଜି ଯେଉଁମାନଙ୍କ ନିୟନ୍ତ୍ରଣରେ ରହିଛି, ସେହିମାନେ ଶାସନର ପ୍ରକୃତ ରିମୋଟ ହାତରେ ରଖିଛନ୍ତି। ସେହିଗୋଷ୍ଠୀର ସ୍ୱାର୍ଥ ପାଇଁ ଖଣି, ଜଙ୍ଗଲ, ଜମି, ଜଳ ଆଦିକୁ ଉନ୍ମୁକ୍ତ କରି ଦିଆଯାଇଛି। କିନ୍ତୁ ଅନ୍ୟ ପକ୍ଷରେ ବେକାରୀ, ବେରୋଜଗାରୀ, ଛଟେଇ, କ୍ଷୁଧା, ଅନାଟନ ଭଳି ସାଧାରଣ ଜନତାର ମୌଳିକ ସମସ୍ୟାମାନ ବୃଦ୍ଧି ପାଇଚାଲିଛି। ଫଳରେ ସଧାରଣ ଜନତାର ତିବ୍ର ଅସନ୍ତୋଷ ବୃଦ୍ଧି ପାଉଛି ଓ ଆନ୍ଦୋଳନର ରୂପ ନେଉଛି। ଏହି ଦ୍ୱନ୍ଦ ଭିତରେ ସରକାର ସାଧାରଣ ଜନତାର ସଙ୍କୁଚିତ ସ୍ୱାଧୀନତାକୁ ଅଧିକ ସଂକୁଚିତ କରିବାରେ ଲାଗିଛି ଓ ତାସତ୍ତ୍ୱେ ଜନ ଅସନ୍ତୋଷକୁ ସାମନା କରିନପାରି ପୋଲିସକୁ ଆଧୁନିକିକରଣ କରୁଛି ଓ ଦମନ ବଢୁଛି। ଏଣୁ ଏଭଳି ଏକ ପରିସ୍ଥିତିରେ ପୁଲିସ ଭିତରେ କିଛି ସୁଧାର ଆଣି ପୁଲିସ ବ୍ୟବସ୍ଥାକୁ ଜନବାଦୀ କରାଯାଇ ପାରିବ ବୋଲି ଭାବିବା ଆଦୌ ଠିକ୍ ହେବ ନାହିଁ। ଏଥିପାଇଁ ଶାସନ ବ୍ୟବସ୍ଥାର ମୂଳ ଉଦ୍ଦେଶ୍ୟରେ ପରିବର୍ତ୍ତନ ଆଣିବା ଆବଶ୍ୟକ।

## ସହାୟକ ପୁସ୍ତିକା


1. କ୍ରିମିନୋଲୋଜି, ଅହମ୍ମଦ ସିଦ୍ଦିକ୍ (ପୃ - ୨୧୫)
2. Memories of a Bengal Civilian, London, Chhato & Windus, 1961, P-140-141.
3. ଇଣ୍ଡିଆନ ବିଗ୍ ବୁର୍ଜୁଇଜ୍, ସୁନୀତ କୁମାର ଘୋଷ
4. କ୍ରିମିନୋଲୋଜି, ଅହମ୍ମଦ ସିଦ୍ଦିକ୍

5. ଅଖିଳ ଭାରତ କ୍ଷେତ ମଜଦୁର ଆସୋସିଏସନ୍ ଓଡ଼ିଶା ଶାଖା ଦ୍ୱାରା ପ୍ରକାଶିତ ପୁସ୍ତିକା

6. ଓଡ଼ିଶା ସରକାରଙ୍କର ମାନବ ବିକାଶ ରିପୋର୍ଟ - ୨୦୦୪

7. ସମାଜ, ତା ୦୯/୧୦/୨୦୦୪ରିଖ

8. ଆସ୍‌ପେକ୍ଟସ - ସଂପାଦନା, ରଜନୀ ଏକ୍‌ସ ଦେଶାଇ, ଜୁଲାଇ - ସେପ୍ଟେମ୍ବର - ୧୯୯୭

9. ଶ୍ୱେତପତ୍ର, ଆରକ୍ଷୀ ପ୍ରଶାସନ - ୨୦୦୪

10. ଅଲ୍ ଇଣ୍ଡିଆ ରିପୋର୍ଟର, ୧୯୯୪, ଓଡ଼ିଶା-୧୯୧

11. ବିଚାରପତି ମାଲିମାଥ କମିଟି ରିପୋର୍ଟ, ମାର୍ଚ୍ଚ-୨୦୦୩।

12. କାଶୀପୁର ଜନ ଆନ୍ଦୋଳନ ଓ ସରକାରୀ ଦମନ ଲୀଳା, ପ୍ରାକୃତିକ ସଂପଦ ସୁରକ୍ଷା ପରିଷଦ, କୁଚେଇପଦର

13. ପୋସ୍କୋ ଓଡ଼ିଶାରେ କ'ଣ କରିବ, ସୁଧୀର ପଟ୍ଟନାୟକ, ମୁକ୍ତିକାମୀ - (ପୃ-୧୦)

14. ଶ୍ୱେତପତ୍ର, ଆରକ୍ଷୀ ପ୍ରଶାସନ - ୨୦୦୪, ପୃଷ୍ଠା-୭

15. ଓଡ଼ିଶା ସହରାଞ୍ଚଳ ପୁଲିସ ବିଲ - ୨୦୦୩, ଏକ ସମୀକ୍ଷା - ପି.ୟୁ.ସି.ଏଲ., ଭୁବନେଶ୍ୱର ଶାଖା ଦ୍ୱାରା ପ୍ରକାଶିତ ପୁସ୍ତିକା - ୨୦୦୪

16. ସ୍ମୃତି ଓ ଅନୁଭୂତି, ନୀଳମଣି ରାଉତରାୟ (ପୃ- ୫୮-୫୯)

17. ସ୍ମୃତି ଓ ଅନୁଭୂତି, ନୀଳମଣି ରାଉତରାୟ (ପୃ-୪୧୧)

18. ସ୍ମୃତି ଓ ଅନୁଭୂତି, ନୀଳମଣି ରାଉତରାୟ (ପୃ-୫୨)

19. ସ୍ମୃତି ଓ ଅନୁଭୂତି, ନୀଳମଣି ରାଉତରାୟ (ପୃ- ୫୮-୫୯)

20. ସ୍ମୃତି ଓ ଅନୁଭୂତି, ନୀଳମଣି ରାଉତରାୟ (ପୃ-୬୯)

21. ବିଧାନ ସଭା ୟୁ.ଡ଼ି. ପ୍ରଶ୍ନ ନଂ ୨୮୦୪, ତା୨୬.୦୭.୨୦୦୪ରିଖ।

22. ପି.କେ. ମିଶ୍ର କମିଶନ ରିପୋର୍ଟ, ପୃ-୨୧୩

23. ପି.କେ. ମିଶ୍ର କମିଶନ ରିପୋର୍ଟ, ପୃ-୨୧୬

24. ସ୍ମୃତି ଓ ଅନୁଭୂତି, ନୀଳମଣି ରାଉତରାୟ (ପୃ-୪୧୩)

25. ସ୍ମୃତି ଓ ଅନୁଭୂତି, ନୀଳମଣି ରାଉତରାୟ (ପୃ-୪୧୩)

26. ବାରିପଦା ମୋକଦ୍ଦମା ରାୟ ତା୨୭:୦୯:୨୦୦୪ରିଖ

27. ଷ୍ଟେଟସମ୍ୟାନ୍, ତା୨୧:୧୦:୨୦୦୫ରିଖ

28. ସେମିଫିଉଡ଼ାଲ ଓ ସେମିକଲୋନିଆଲ୍ ସୋସାଇଟି, ଡ଼ଃ ଆର.ଏସ୍.ରାଓ, ପୃ-୧୬୨

29. ଓଡ଼ିଶାରେ କୃଷକ ଆନ୍ଦୋଳନ, ସୋମନାଥ ପାତ୍ର, ପୃଷ୍ଠା-୪୯।

30. ଓଡ଼ିଶାରେ କୃଷକ ଆନ୍ଦୋଳନ, ସୋମନାଥ ପାତ୍ର, ପୃଷ୍ଠା-୫୨-୫୩।

31. ଟାଟା ଭକ୍ତ ମୁଖ୍ୟମନ୍ତ୍ରୀ ଓ ଗଞ୍ଜାମ ଜିଲ୍ଲାପାଳଙ୍କୁ ଚିଠି, ପ୍ରଫୁଲ୍ଲ ସାମନ୍ତରା, ତା୧୦:୦୭:୯୮ରିଖ

32. ଜାତୀୟ ପୁଲିସ କମିଶନ, ତୃତୀୟ ରିପୋର୍ଟ (ପୃଷ୍ଠା-୩୨)

33. ଡ଼ି.କେ. ବସୁ (୧୯୯୭) ୧୩ ଓସିଆର୍ (ସୁପ୍ରିମ୍ କୋର୍ଟ), ପୃ-୨୧୪।

34. ଯୋଗୀନ୍ଦର କୁମାର, ୧୯୯୪ (ଏସ୍.ସି.ସି) କ୍ରି, ପୃ-୧୧୭୨।

35. ଏ.ଆଇ.ଆର. ୧୯୮୧ ସୁପ୍ରିମ୍ କୋର୍ଟ, ପୃ-୬୨୫।

36. ଦମନ, ଋଷୀମୂଳିଆ ସମିତି, ରାୟଗଡ଼ା-ଗଜପତି ଡ଼ିଭିଜନାଲ କମିଟି

37. ସମ୍ବାଦ, ଜୁନ୍ ୬, ମସିହା-୨୦୦୫।

38. ଜାତୀୟ ମାନବିକ ଅଧିକାର କମିଶନ ପକ୍ଷରୁ ସବୁ ରାଜ୍ୟର ମୁଖ୍ୟମନ୍ତ୍ରୀଙ୍କୁ ନିର୍ଦ୍ଦେଶାବଳୀ ତା୨୯:୦୩:୧୯୯୭ରିଖ

39. ଭାରତର ସଶସ୍ତ୍ର ମୁକ୍ତି ସଂଗ୍ରାମ, ପ୍ରଫୁଲ୍ଲ ଦାସ- ପୃଷ୍ଠା - ୫୭

**ଲେଖା ପ୍ରସ୍ତୁତି ପରେ ଦୁଇଟି ସମ୍ବାଦ :**

## ହାଜତ ମୃତ୍ୟୁ ତଦନ୍ତ ରିପୋର୍ଟ ବିଧାନ ସଭାରେ ଦାଖଲ ପାଇଁ ନିର୍ଦ୍ଦେଶ

"ରାଜ୍ୟରେ ହାଜତ ମୃତ୍ୟୁ ଘଟଣା ଦିନକୁ ଦିନ ବୃଦ୍ଧି ପାଇଚାଲିଛି। ଶହୀଦ ନଗର ଓ କୁଚିଣ୍ଡା ହାଜତ ମୃତ୍ୟୁ ସଂପର୍କରେ ତଦନ୍ତ ପାଇଁ ମୁଖ୍ୟମନ୍ତ୍ରୀ ଆଦେଶ ଦେଇଛନ୍ତି। ମାତ୍ର ଏ ଭିତରେ ୬ ମାସ ବିତି ଯାଇଥିଲେ ମଧ୍ୟ ସେହି ତଦନ୍ତ ରିପୋର୍ଟ ଗୃହରେ ଉପସ୍ଥାପନ କରାଗଲା ନାହିଁ।"

ସଦସ୍ୟମାନଙ୍କର ଉଦ୍‌ବେଗକୁ ଦେଖି ବିଧାନସଭାରେ ତା୨୪।୧୧।୨୦୦୫ ରିଖରେ ସେତେବେଳେ ଅଧ୍ୟକ୍ଷତା କରୁଥିବା ଉପ-ବାଚସ୍ପତି ଶ୍ରୀ ଦୋରା "ମୁଖ୍ୟମନ୍ତ୍ରୀ ହାଜତ ମୃତ୍ୟୁ ସଂପର୍କରେ ତାଙ୍କ ସୁବିଧା ଅନୁଯାୟୀ ତଦନ୍ତ ରିପୋର୍ଟ ଗୃହରେ ଦାଖଲ କରନ୍ତୁ" ବୋଲି ନିର୍ଦ୍ଦେଶ ଦେଇଥିଲେ। (ସମାଜ, ତା ୨୫।୧୧।୨୦୦୫)।

## ଏନ୍‌କାଉଣ୍ଟର - ଦୁଇ ନକ୍‌ସଲ ମୃତ

ମାଲକାନାଗିରି ସୀମାନ୍ତକୁ ଲାଗି ଆନ୍ଧ୍ର ଓ ଓଡ଼ିଶା ସୀମା ମଧ୍ୟରେ କୋୟୁର ଥାନା ଅନ୍ତର୍ଗତ ଦୁଲାରୀ୦ାରେ "ପୁଲିସ୍ ଓ ନକ୍‌ସଲ ଗୁଳି ବିନିମୟରେ ମିଲିଟାରୀ ପ୍ଲାଟୁନ୍‌ର କମାଣ୍ଡର ସିବାନ୍ନାଙ୍କର ମୃତ୍ୟୁ ଘଟିଛି।" "ଅନ୍ୟ ଜଣେ ନକ୍‌ସଲ ନେତା ପୁଲିସ ଗୁଳିରେ ପ୍ରାଣ ହରାଇଥିବା ମାଲକାନାଗିରି ଏସ୍.ପି. ଜିତେନ୍ଦ୍ର କୋଏଲ୍ ପ୍ରକାଶ କରିଛନ୍ତି।" (ସମାଜ, ୨୫।୧୧।୨୦୦୫)

# ପୁଲିସ ହାତରେ ଲାଠି ଓ ବନ୍ଧୁକ କାହା ସ୍ୱାର୍ଥରେ

ସଂକଳକ :
ବିଶ୍ୱପ୍ରିୟ କାନୁନ୍‌ଗୋ

ଡ଼ି.ଟି.ପି. :
ଚନ୍ଦନ କମ୍ପ୍ୟୁଟର
କୋର୍ଟ ଏରିଆ, ଭୁବନେଶ୍ୱର-୧୪।

ପ୍ରିଣ୍ଟିଂ :
ପପୁଲାର ପ୍ରିଣ୍ଟ୍
ଲୁଇସ୍ ରୋଡ୍, ଭୁବନେଶ୍ୱର-୨।

ପ୍ରକାଶକ :
ବିଶ୍ୱପ୍ରିୟ କାନୁନ୍‌ଗୋ
୨୧୨୨, ସବର ସାହି ଲେନ
ଭୁବନେଶ୍ୱର - ୭୫୧୦୦୬।

ସହଯୋଗ ମୂଲ୍ୟ : ୬ ଟଙ୍କା